ସଚିତ୍ର

# ରାଣା ପ୍ରତାପସିଂହ

ଶ୍ରୀ ଦୟାନିଧି ମିଶ୍ର, ବି. ଏ., ଏଲ୍. ଟି.

# Raṇá Pratap Singh

BY

DAYANIDHI MISRA, B. A., L T.

ଦ୍ୱିତୀୟ ସଂସ୍କରଣ

Published by

The Students' Store, Berhampore.

Printed by D. Rath

AT THE STORE PRESS,

BERHAMPORE.

1930.

Price. 10 annas.

ମୂଲ୍ୟ ଠ ୦।୵

# Middle School Series.

# ଉତ୍ସର୍ଗପତ୍ର



ପରମାରାଧ୍ୟ ୰ ପିତୃଦେବଙ୍କ

ଶ୍ରୀଚରଣକମଳରେ

* ଉତ୍ସୃଷ୍ଟ *



# ଭୂମିକା

(ଦ୍ୱିତୀୟ ସଂସ୍କରଣର)



ଏହି ପୁସ୍ତକର କେତେକାଂଶ "ମୁକୁର"ରେ ବାହାରିଥିଲା । ବର୍ତ୍ତମାନ ସମଗ୍ର ଉପାଖ୍ୟାନ ପୁସ୍ତକାକାରରେ ପ୍ରକାଶିତ ହୋଇଅଛି ।

ରାଣା ପ୍ରତାପସିଂହଙ୍କ ମହନୀୟ ଚରିତ ବର୍ଣ୍ଣନା କରିବା ମାଦୃଶ ଲେଖକ ପକ୍ଷରେ କଷ୍ଟସାଧ୍ୟ ହେଲେ ସୁଦ୍ଧା "ତଦ୍‌ଗୁଣୈଃ କର୍ଣ୍ଣମାଗତ୍ୟ ଚାପଲାୟ ପ୍ରଣୋଦିତଃ" ହୋଇ ମୁଁ ଏହି କାର୍ଯ୍ୟରେ ହସ୍ତକ୍ଷେପ କରିଅଛି । ଏପରି ଅବସ୍ଥାରେ ମୋର ଲେଖାରେ ଭ୍ରମପ୍ରମାଦ ରହିବା ସ୍ୱାଭାବିକ । ଆଶା କରେଁ, ସହୃଦୟ ପାଠକପାଠିକାବୃନ୍ଦ ନିଜ ଉଦାରତା ଗୁଣରେ ସକଳ ତ୍ରୁଟି ମାର୍ଜ୍ଜନା କରି ଲେଖକକୁ କୃତଜ୍ଞତା-ପାଶରେ ଆବଦ୍ଧ କରିବେ ।

ଏହି ପୁସ୍ତକର ପ୍ରଣୟନରେ ବଙ୍ଗଳା ଭାଷାରେ ପ୍ରକାଶିତ ରାଜସ୍ଥାନର ଇତିହାସ ଏବଂ ସ୍ୱର୍ଗୀୟ ଦ୍ୱିଜେନ୍ଦ୍ରଲାଲ ରାୟଙ୍କ ପ୍ରଣୀତ "ରାଣା ପ୍ରତାପ" ନାମକ ନାଟକର ଆଶ୍ରୟ ନେଇଥିବାରୁ ମୁଁ ଉକ୍ତ ଲେଖକମାନଙ୍କ ନିକଟରେ ଚିରଋଣୀ ରହିଲି । ଇତି ।

ଶ୍ରୀ ଦୟାନିଧି ମିଶ୍ର

# ରାଣା ପ୍ରତାପସିଂହ

## ପ୍ରଥମ ପରିଚ୍ଛେଦ

### ଅଭିଷେକ

ରାଜସ୍ଥାନର ପ୍ରାଚୀନ ରାଜ୍ୟମାନଙ୍କ ମଧ୍ୟରେ ମେବାଡ଼ ଅନ୍ୟତମ । ଏହି ରାଜ୍ୟର ରାଜାମାନେ ସୂର୍ଯ୍ୟବଂଶୀୟ ଅଟନ୍ତି । ସେମାନେ ଭଗବାନ୍ ରାମଚନ୍ଦ୍ରଙ୍କର ବଂଶଧର ବୋଲି ଗର୍ବ କରଥାନ୍ତି । ବର୍ତ୍ତମାନ ଯୁଗରେ ଏହି ରାଜ୍ୟ ଉଦୟପୁର ନାମରେ ଅଭିହିତ ।

କିନ୍ତୁ ପୂର୍ବେ ଏହି ରାଜ୍ୟ ମେବାଡ଼ ନାମରେ ପ୍ରସିଦ୍ଧି ଲାଭ କରିଥିଲା । ସୁପ୍ରସିଦ୍ଧ ଚିତୋଡ଼ ଦୁର୍ଗ ଏହି ରାଜ୍ୟର ରାଜଧାନୀ ଥିଲା । ମେବାଡ଼ର ରାଣାମାନେ ରାଜସ୍ଥାନର ନରପତିମାନଙ୍କ ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରିଥିଲେ । ସେମାନଙ୍କ ସ୍ୱଦେଶପ୍ରାଣତା, ସମରନୈପୁଣ୍ୟ ଓ ପ୍ରଜାବାତ୍ସଲ୍ୟର ଉଜ୍ଜ୍ୱଳ ବର୍ଣ୍ଣନାରେ ଇତିହାସର ପୃଷ୍ଠା ଗୌରବାନ୍ୱିତ । ସେମାନେ ଶିଶୋଦୀୟ ନୃପତିନାମରେ ଇତିହାସରେ ପରିଚିତ ।

ମୁସଲମାନମାନଙ୍କ ଭାରତାଧିକାର ସମୟରେ ମେବାଡ଼ର କୀର୍ତ୍ତି-ଲୁସୁମ ପ୍ରସ୍ଫୁଟିତ ହୋଇ ଜଗତକୁ ବିମଳ ସୌରଭରେ ମୁଗ୍ଧ କରୁଥିଲା ।

ଶିଶୋଦୀୟ-କୁଳ-ତିଳକ ସମରସିଂହ ମହମ୍ମଦ ଘୋରୀଙ୍କ ଭାରତାକ୍ରମଣ-ସମୟରେ ଦିଲ୍ଲୀର ଚୌହାନ ନରପତି ପୃଥ୍ୱୀରାଜଙ୍କ ସହାୟତା କରି ଯବନ-ଉଦ୍ୟମକୁ ଏକାଧିକଥର ବ୍ୟର୍ଥ କରିଥିଲେ । ସତୀଶିରୋମଣି ପଦ୍ମିନୀଙ୍କ ଅଙ୍କଶୟନାଭିଳାଷୀ ଅଲ୍ଲାଉଦ୍ଦିନ ଖିଲିଜି ରାଣା ଭୀମସିଂହଙ୍କ ହସ୍ତରେ କିପରି ଅପମାନିତ ଓ ଲାଞ୍ଛିତ ହୋଇଥିଲେ, ତାହା ଇତିହାସ-ପାଠକମାନଙ୍କର ସୁବିଦିତ ଅଟେ । ପୁଣି ଯବନର କବଳରୁ କୌଶଳରେ ସ୍ୱାମୀଙ୍କୁ ରକ୍ଷାକରି ସତୀ ପଦ୍ମିନୀ ଯେପରି ଜ୍ୱଳନ୍ତ ଚିତାର ଅଗ୍ନି-ଶିଖାକୁ ଯବନର କୁସୁମ-ତଳ୍ପ ଅପେକ୍ଷା କୋମଳତର ମଣିଥିଲେ, ତହିଁର ତୁଳନା ପୃଥିବୀର ଇତିହାସରେ ବିରଳ । ଯେତେବେଳେ ଭାରତବର୍ଷରେ ପଠାଣ-ଶକ୍ତିର ପତନ ସଙ୍ଗେ ସଙ୍ଗେ ମୋଗଲ-ଶକ୍ତିର ଅଭ୍ୟୁଦୟ ହେଲା ଏବଂ ମହାବୀର ବାବର ଇବ୍ରାହିମ ଲୋଦିଙ୍କୁ ପାନିପଥ ଯୁଦ୍ଧ-କ୍ଷେତ୍ରରେ ପରାସ୍ତ କରି ରାଜ-ପୁତାନା ବିରୁଦ୍ଧରେ ସମରଯାତ୍ରା କଲେ, ପ୍ରାତଃସ୍ମରଣୀୟ ରାଣା ସଙ୍ଗ ବା ସଂଗ୍ରାମସିଂହ ବିଶାଳ ରାଜପୁତ-ବାହିନୀର ଅଧିନାୟକରୂପେ ମୋଗଲ ବିରୁଦ୍ଧରେ ଛିଡ଼ା ହୋଇ ବାବରଙ୍କ ଜୟାଶାକୁ ଆକାଶ-କୁସୁମରେ ପରିଣତ କରିଥିଲେ । ଯଦି ବାବର ଜଘନ୍ୟ କୂଟ କୌଶଳର ଆଶ୍ରୟ ନେଇ ନଥାନ୍ତେ, ତାହାହେଲେ ମୋଗଲ-ଶକ୍ତି ଭାରତବର୍ଷରୁ ଏକାବେଳକେ ବିଲୁପ୍ତ ହୋଇଥାନ୍ତା; କିନ୍ତୁ ଉଦାର - ରାଜପୁତମାନେ ଯବନର କୌଶଳ ବୁଝି ନପାରି ପରିଶେଷରେ ପରାଜୟ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ । ମୋଗଲମାନେ ଯୁଦ୍ଧରେ ଜୟୀ ହୋଇଥିଲେ ସତ୍ୟ, ମାତ୍ର ରାଜପୁତ-ଶକ୍ତିର ଅଦମ୍ୟତା ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ଅନୁଭବ କରିଥିଲେ ।

ଘଟଣା-ବହୁଳ ମେବାଡ଼-ଇତିହାସର ବିସ୍ତୃତ ବିବରଣ ଏଠାରେ ଏକାବେଳକେ ଅସମ୍ଭବ । ପ୍ରତ୍ୟେକ ଘଟଣାର ଅବଲମ୍ବନରେ ଗୋଟିଏ

ଗୋଟିଏ ପ୍ରକାଣ୍ଡ ଗ୍ରନ୍ଥ ଲେଖାଯାଇପାରେ । କିନ୍ତୁ ସେପରି କରିବାକୁ ଆମ୍ଭମାନଙ୍କର ସମୟ ବା ଶକ୍ତି କାହିଁ? ପୁଣି ରାଣା ପ୍ରତାପସିଂହଙ୍କ ଚରିତର ବର୍ଣ୍ଣନା ସମୟରେ ଏହି ଘଟନାଗୁଡ଼ିକର ସବିସ୍ତାର ପର୍ଯ୍ୟାଲୋଚନା ଅପ୍ରାସଙ୍ଗିକ ହେବ ।

ରାଣା ଉଦୟସିଂହଙ୍କ ସମୟରେ ମେବାଡ଼ର ପତନ-ବୀଜ ବପିତ ହୋଇଥିଲା । ଏହି ଉଦୟସିଂହଙ୍କୁ ବନବୀରଙ୍କର ଗୁପ୍ତ ଛୁରିକାଘାତରୁ ରକ୍ଷା କରିବା ନିମନ୍ତେ ଧାତ୍ରୀ ପାନ୍ନା ସ୍ୱୀୟ ପୁତ୍ରର ବକ୍ଷ ଉନ୍ମୁକ୍ତ କରିଥିଲେ । ଶିଶୋଦୀୟ କୁଳରେ ଜନ୍ମଗ୍ରହଣ କରି ସେ ଯେପରି ଭୀରୁତା ପ୍ରଦର୍ଶନ କରିଥିଲେ, ତାହା ଭାବିଲେ କ୍ଷୋଭରେ ମ୍ରିୟମାଣ ହେବାକୁ ପଡ଼େ । ଭୀରୁ ଉଦୟସିଂହ ଯବନମାନଙ୍କ ହସ୍ତରେ ପୈତୃକ ଚିତୋର଼ ଦୁର୍ଗ ସମର୍ପଣ କରି ଗୋଟିଏ ନୂତନ ଦୁର୍ଗ-ନିର୍ମାଣରେ ପ୍ରୟାସୀ ହେଲେ । ତାଙ୍କ ନାମାନୁସାରେ ଏହି ନୂତନ ଦୁର୍ଗର ନାମ ଉଦୟପୁର ହୋଇଥିଲା ।

ଉଦୟସିଂହ କେବଳ ଏତିକିରେ ସନ୍ତୁଷ୍ଟ ହୋଇନଥିଲେ । ମେବାଡ଼ ରାଜ୍ୟକୁ ପୃଥିବୀପୃଷ୍ଠରୁ ବିଲୁପ୍ତ କରିବା ନିମନ୍ତେ ସେ ଗୋଟିଏ ଭୀଷଣ କାଣ୍ଡର ସୂତ୍ରପାତ କରି ମାନବ-ଲୀଳା ସମ୍ବରଣ କରିଥିଲେ । ପ୍ରତାପସିଂହ ତାଙ୍କ ପୁତ୍ରମାନଙ୍କ ମଧ୍ୟରେ ଜ୍ୟେଷ୍ଠ ଓ ଶ୍ରେଷ୍ଠ ଥିଲେ ସୁଦ୍ଧା ସେ କନିଷ୍ଠ ଓ ଅଯୋଗ୍ୟ ଜଗମଲ୍ଲଙ୍କ ହସ୍ତରେ ରାଜ୍ୟଭାର ନ୍ୟସ୍ତ କରିବାରୁ ପ୍ରଜାମାନେ ଅତିଶୟ ଉତ୍ତେଜିତ ହୋଇଥିଲେ । ଜ୍ୟେଷ୍ଠ ପ୍ରତାପସିଂହ ସେ ସିଂହାସନର ଏକମାତ୍ର ଯୋଗ୍ୟ ଉତ୍ତରାଧିକାରୀ, ଏ ବିଷୟରେ ସେମାନଙ୍କର ଆଦୌ ସନ୍ଦେହ ନ ଥିଲା ।

ପିତାଙ୍କ ଜୀବିତାବସ୍ଥାରେ ସୁଦ୍ଧା ପ୍ରତାପସିଂହ ପ୍ରଜାମାନଙ୍କ ପ୍ରିୟପାତ୍ର ହୋଇପାରିଥିଲେ । ତାଙ୍କ ସଦ୍‌ଗୁଣାବଳୀ ସମସ୍ତଙ୍କୁ ମୁଗ୍ଧ କରିଥିଲା । ଲୋକଙ୍କର ବିଶ୍ୱାସ ଥିଲା ଯେ, ପ୍ରତାପଙ୍କ ଯୋଗେ ମେବାଡ଼ର ଲୁପ୍ତ

ଗୌରବର ପୁନରୁଦ୍ଧାର ହେବ, କିନ୍ତୁ ଉଦୟସିଂହଙ୍କ ଅବୈଧ ବ୍ୟବସ୍ଥା ସେମାନଙ୍କୁ ନୈରାଶ୍ୟର ଗଭୀରତମ କୂପରେ ନିକ୍ଷେପ କଲା ।

ଶୋଣୀ-ଗୁରୁବଂଶୀୟ ଝାଲୋର-ରାଜକୁମାରୀଙ୍କ ଗର୍ଭରୁ ପ୍ରତାପ ଜନ୍ମ-ଗ୍ରହଣ କରିଥିଲେ । ଉଦୟସିଂହଙ୍କ ଉପରୋକ୍ତ ବ୍ୟବସ୍ଥାରେ ପ୍ରତାପସିଂହଙ୍କ ମାତୁଳ ଝାଲୋରାଧିପତି ଅତିଶୟ ବିଚଳିତ ହୋଇ ପଡ଼ିଲେ । ଉଦୟସିଂହଙ୍କ ବ୍ୟବସ୍ଥାକୁ ଅନ୍ୟଥା କରିବା ନିମନ୍ତେ ଦୃଢ଼ସଂକଳ୍ପ ହୋଇ ସେ ମେବାଡ଼ର ପ୍ରଧାନ ସର୍ଦ୍ଦାର ଚନ୍ଦାବତ୍ କୃଷ୍ଣଙ୍କ ନିକଟକୁ ଯାଇ କହିଲେ, "ଜ୍ୟେଷ୍ଠ ଭ୍ରାତାର ଜୀବିତାବସ୍ଥାରେ କନିଷ୍ଠର ରାଜ୍ୟପ୍ରାପ୍ତି ଆପଣ ଅନୁମୋଦନ କରନ୍ତି କି ?" ତାଙ୍କ ପ୍ରଶ୍ନର ଉଦ୍ଦେଶ୍ୟ ବୁଝିପାରି ଚନ୍ଦାବତ୍ କୃଷ୍ଣ ଅଳ୍ପ ହସି କହିଲେ, "ନିର୍ବାଣ ପୂର୍ବେ ମୃତ୍ତିକାସ୍ତୁପର ବ୍ୟବସ୍ଥା ମନ୍ଦ ନୁହେ ।" ଉଭୟେ ଉଭୟଙ୍କ ଉକ୍ତିର ମର୍ମ ବୁଝିପାରି ଅନତିବିଳମ୍ବେ କାର୍ଯ୍ୟରେ ଲାଗିପଡ଼ିଲେ ।

ପିତାଙ୍କ ଇଚ୍ଛା ବିରୁଦ୍ଧରେ ଯିବାକୁ ପ୍ରତାପ ପ୍ରଥମେ ପଶ୍ଚାତ୍ପଦ ହୋଇଥିଲେ; କିନ୍ତୁ ଯେତେବେଳେ ସେ ଶୁଣିଲେ ଯେ, ପ୍ରଜାମାନେ ମାତୃଭୂମିର ଉଦ୍ଧାରନିମନ୍ତେ ତାଙ୍କୁ ରାଜା କରିବାକୁ ଇଚ୍ଛୁକ, ସେତେ-ବେଳେ ସେ ଆଉ ସମ୍ମତ ନ ହୋଇ ରହିପାରିଲେନାହିଁ । ବିଶେଷତଃ ଚନ୍ଦାବତ୍ କୃଷ୍ଣ ପ୍ରଭୃତି ସର୍ଦ୍ଦାରଗଣ ତାଙ୍କୁ ସ୍ପଷ୍ଟଭାବରେ ବୁଝାଇଥିଲେ ଯେ, ନିଶ୍ଚୟ ଜଗମଲ୍ଲ ମଧ୍ୟ ଏଥିରେ ବାଧା ପ୍ରଦାନ କରିବେ ନାହିଁ । ଏଣୁକରି ସିଂହାସନରେ ଉପବେଶନ କରିବା ନିମନ୍ତେ ସମ୍ମତି ପ୍ରଦାନ କରି ପ୍ରତାପସିଂହ ସର୍ଦ୍ଦାରମାନଙ୍କ ସମଭିବ୍ୟାହାରରେ ଉଦୟପୁରକୁ ଗମନ କଲେ ।

ପିତାଙ୍କଠାରୁ ରାଜ୍ୟଭାର ପ୍ରାପ୍ତ ହୋଇ ଜଗମଲ୍ଲ ଅଭିଷେକର ସମସ୍ତ ଆୟୋଜନ କରି ସାରିଥିଲେ । ଉଦୟପୁର ଦୁର୍ଗ ଅପୂର୍ବ ଶୋଭାରେ

ବିମଣ୍ଡିତ ହୋଇଥିଲା । କତିପୟ ଅନୁଚର ଓ ଅମାତ୍ୟମାନଙ୍କ ସଙ୍ଗେ ସେ ଅଭିଷେକ-ସଦନରେ ଉପସ୍ଥିତ ହେଲେ । କିନ୍ତୁ ପିତା ଯେ କାହିଁକି ତାଙ୍କୁ ରାଜ୍ୟ ଦେଲେ ଏବଂ ରାଜ୍ୟ ନେଇ ସେ କଣ କରିବେ, ନିର୍ବୋଧ ଜଗମଲ୍ଲ ତାହା ଆଦୌ ବୁଝିପାରିଲେନାହିଁ । ସେ ମନେ ମନେ ଭାବିବାକୁ ଲାଗିଲେ, "ଏ ଗୋଟିଏ ନୂତନ ଆମୋଦ । ଏହି ଆମୋଦରେ ବିଶେଷ ସୁଖ ଅଛି ।" ସିଂହାସନ ଯେ ଗୁରୁ ଦାୟିତ୍ୱର ଆଧାର, ଏହି ଭାବ ତାଙ୍କ ମସ୍ତିଷ୍କକୁ ଆଦୌ ସ୍ପର୍ଶ କରି ନ ଥିଲା । କିନ୍ତୁ ଯେତେବେଳେ ସେ ଦେଖିଲେ ଯେ, ସାମନ୍ତବୃନ୍ଦ-ପରିବେଷ୍ଟିତ ପ୍ରତାପସିଂହ ତାଙ୍କ ସମ୍ମୁଖରେ ଦଣ୍ଡାୟମାନ, ସେତେବେଳେ ତାଙ୍କ ମନରେ ଦୃଢ଼ ବିଶ୍ୱାସ ଜାତ ହେଲା ଯେ, ପ୍ରତାପହିଁ ସିଂହାସନର ଯୋଗ୍ୟ ଅଧିକାରୀ । ବଡ଼ ଭାଇ ଥାଉଁ ଥାଉଁ ସାନ ଭାଇ ରାଜା ହେବା ଅତି ଅସୁନ୍ଦର କଥା । ଏଣୁକରି ସେ ପ୍ରତାପଙ୍କ ନିକଟକୁ ଯାଇ ଭକ୍ତିଭରେ ପ୍ରଣାମ କଲେ ଏବଂ ତାଙ୍କ ହସ୍ତ ଧରି ସିଂହାସନ ନିକଟକୁ ଗମନ କଲେ । ଚତୁର୍ଦ୍ଦିଗରୁ ଦୁହିଁଙ୍କ ଉପରେ ପୁଷ୍ପବୃଷ୍ଟି ହେଲା । ଦରବାରରେ ଉପସ୍ଥିତ ସମସ୍ତେ ପ୍ରତାପଙ୍କ ଜୟ-ଧ୍ୱନିରେ ଅଭିଷେକ-ସଦନକୁ ବିକମ୍ପିତ କଲେ । ସର୍ବସମ୍ମତିକ୍ରମେ ପ୍ରତାପସିଂହ ସିଂହାସନରେ ଉପବିଷ୍ଟ ହେଲେ । ନୈରାଶ୍ୟ-ଅନ୍ଧକାର-ମଳିନ ମେବାଡ଼-ଗଗନ ଆଶାର ଶୁଭ୍ର ଆଲୋକରେ ଆଲୋକିତ ହେଲା ।



# ଦ୍ୱିତୀୟ ପରିଚ୍ଛେଦ

## ନୂତନ ଦୀକ୍ଷା

ପ୍ରତାପ ମେବାଡ଼ର ସିଂହାସନ ଅଧିକାର କଲେ । ରାଜକୀୟ ଭୂଷଣରେ ତାଙ୍କ ଶରୀର ବିମଣ୍ଡିତ ହେଲା । ତାଙ୍କ ମସ୍ତକୋପରି ମେବାଡ଼ର ରାଜଛତ୍ର ଶୋଭା ପାଇବାକୁ ଲାଗିଲା । କିନ୍ତୁ ରାଜ୍ୟ କାହିଁ ଯେ, ପ୍ରତାପ ଶାସନ କରିବେ ? ପ୍ରିୟତମ ଚିତୋଡ଼ ଦୁର୍ଗ ଯବନମାନଙ୍କ ହସ୍ତଗତ ହୋଇସାରିଅଛି । ମେବାଡ଼ରେ ଯବନର ଜୟ-ବୈଜୟନ୍ତୀ ଅପ୍ରତିହତ-ଭାବରେ ଉଡ୍ଡୀୟମାନ ହେଉଅଛି । ତେବେ ପ୍ରତାପଙ୍କ ଅପନା କେଉଁ-ଠାରେ ? ରାଜ୍ୟହୀନ ରାଜତ୍ୱ ନେଇ ସେ କେଉଁ ସ୍ୱାର୍ଥଙ୍କର ଅବନେତା ହେବେ ?

ମେବାଡ଼ର ସ୍ୱାଧୀନତା ସମ୍ପୂର୍ଣ୍ଣରୂପେ ଅପହୃତ ହୋଇ ନଥିଲେ ସୁଦ୍ଧା ରାଜ୍ୟର ଅଧିକାଂଶ ଦୁର୍ଗ ମୋଗଲର ହସ୍ତଗତ ହୋଇସାରିଥିଲାଣି— ଏମନ୍ତ କି, ମେବାଡ଼ର ହୃତ୍‌ପିଣ୍ଡ ଚିତୋଡ଼ ସୁଦ୍ଧା ଅଧୁନା ଦିଲ୍ଲୀର ଅଧୀନତା-ପାଶରେ ବଦ୍ଧ । ରାଜ୍ୟର ଧ୍ୱଂସାବଶିଷ୍ଟ ନେଇ ରାଣା ଉଦୟ-ପୁରରେ ରାଜତ୍ୱ କରୁଥିଲେ । ଏହା ଯେ ରାଜତ୍ୱ ନୁହେ—ବରଂ ସାମାନ୍ୟ ପ୍ରଜା ପ୍ରାୟେ କାଳାତିପାତ କରିବା ଶତଗୁଣରେ ଶ୍ରେୟସ୍କର ! ତଦୁପରି ଯବନର ଅତ୍ୟାଚାରରେ ମେବାଡ଼ ଜର୍ଜରିତ ହୋଇସାରିଥିଲାଣି । ହିନ୍ଦୁର ଦେବାଳୟ ବିଧ୍ୱସ୍ତ ହୋଇ ତହିଁର ଉପକରଣରେ ମସ୍‌ଜିଦ୍ ନିର୍ମିତ ହୋଇଥିଲା—ହିନ୍ଦୁର ପରମାରାଧ୍ୟ ଗୋଜାତି ଉପରେ ଅକଥନୀୟ ଅତ୍ୟା-ଚାର ଅନୁଷ୍ଠିତ ହେଉଥିଲା । ଏ ସବୁ ହୃଦୟବିଦାରକ ଦୃଶ୍ୟ ଦେଖି

ପ୍ରତାପଙ୍କ ମସ୍ତକ ବଦ୍ଧୃର୍ତ୍ତିତ ହେବାକୁ ଲାଗିଲା । ସେ କଣ କରିବେ ଯେ ଠିକ୍ କରିପାରିଲେ ନାହିଁ ।

ପ୍ରତାପଙ୍କ ରାଜତ୍ୱକାଳରେ ପ୍ରତାପାନ୍ୱିତ ଅକବର ଦିଲ୍ଲୀର ସମ୍ରାଟ ଥିଲେ । ତାଙ୍କ ରାଜତ୍ୱର ପ୍ରାରମ୍ଭରେ ମୋଗଲସାମ୍ରାଜ୍ୟ କ୍ଷୁଦ୍ର ସୀମା ମଧ୍ୟରେ ଅବଦ୍ଧ ଥିଲା । ମୋଗଲମାନଙ୍କୁ ଭାରତବର୍ଷରୁ ତଡ଼ିଦେବା ନିମନ୍ତେ ପଠାଣମାନେ ବଦ୍ଧପରିକର ଥିଲେ । ସେମାନଙ୍କ ବିରୁଦ୍ଧରେ ଏକାକୀ ଛିଡ଼ାହେବା ଅକବରଙ୍କ ସାଧ୍ୟାତୀତ ଥିଲା । ସେ ଭଲରୂପେ ବୁଝିପାରିଥିଲେ ଯେ, ରାଜପୁତମାନଙ୍କ ସାହାଯ୍ୟ ବ୍ୟତୀତେକେ ମୋଗଲ-ମାନଙ୍କ ଭାରତବର୍ଷରେ ଅବସ୍ଥାନ ଅସମ୍ଭବ ହୋଇପଡ଼ିବ । ହିନ୍ଦୁମାନେ ମୋଗଲ ଅପେକ୍ଷା ପଠାଣଙ୍କୁ ଅଧିକତର ଘୃଣାଚକ୍ଷୁରେ ଦେଖୁଥିଲେ, ଯେହେତୁ ମୋଗଲମାନେ ସେମାନଙ୍କ ଧର୍ମରେ ହସ୍ତକ୍ଷେପ କରୁ ନ ଥିଲେ । ଏଣୁକରି ଅକବର ରାଜପୁତମାନଙ୍କ ସହିତ ଅନାୟାସରେ ବନ୍ଧୁତା ସଂସ୍ଥାପନ କରିବାକୁ ସମର୍ଥ ହୋଇ ଥିଲେ । ଏହି ବନ୍ଧୁତା କ୍ରମେ ଏପରି ବୃଦ୍ଧିପ୍ରାପ୍ତ ହେଲା ଯେ, କେଣ୍ୟାତ ରାଜପୁତ ପରିବାରଗୁଡ଼ିକ ସହିତ ଅକବରଙ୍କ ବୈବାହିକ ସମ୍ପର୍କ ସଂସ୍ଥାପିତ ହେଲା । ଅମ୍ବରାଧିପତି ମାନ-ସିଂହଙ୍କ ପିତୃଷ୍ୱସାଙ୍କ ପାଣିଗ୍ରହଣ କରି ଅକବର ତାଙ୍କୁ ପ୍ରଧାନ ସେନା-ନାୟକ-ପଦରେ ନିଯୁକ୍ତ କଲେ । ସେ ସମୟରେ ପ୍ରତାପସିଂହ ବ୍ୟତୀତ ମାନସିଂହଙ୍କ ସମକକ୍ଷ ବୀର ଭାରତବର୍ଷରେ ନଥିଲେ । ତାଙ୍କ ସାହାଯ୍ୟରେ ଅକବର ଅନେକ ରାଜ୍ୟ ଜୟ କରି ମୋଗଲ ସାମ୍ରାଜ୍ୟର ପୁଷ୍ଟିସାଧନ କରିଥିଲେ । ରାଜସ୍ଥାନର ଅନ୍ୟାନ୍ୟ ରାଜାମାନେ ମଧ୍ୟ ମୋଗ-ଲର ଅଧୀନତା ସ୍ୱୀକାର କଲେ ଏବଂ ମୋଗଲ ଦରବାରରେ ଉଚ୍ଚ-ପଦାଭିଷିକ୍ତ ହୋଇ ଅକବରଙ୍କ ଶାସନ-କାର୍ଯ୍ୟରେ ସହାୟତା କରିବାକୁ ଲାଗିଲେ । ରାଜା ତୋଦରମଲ୍ଲ ବନ୍ଦୋବସ୍ତ ବିଭାଗର ପ୍ରଧାନ କର୍ମଚାରୀ-ରୂପେ ନିଯୁକ୍ତ ହୋଇ ମୋଗଲ-ସାମ୍ରାଜ୍ୟର ଖଜଣାଆଦାୟକୁ ସୁଶୃଙ୍ଖଳିତ

ନିତ କଲେ । ମେବାଡ଼ର ରାଣାଙ୍କ ସହିତ ବୈବାହିକ ସମ୍ପର୍କ ରଖିବା ନିମନ୍ତେ ଅକବର ଅନେକ ଚେଷ୍ଟା କଲେ; କିନ୍ତୁ ଉଦୟସିଂହ ଶେଷରୁ ହେଲେ ସୁଦ୍ଧା ନିଜ ଦୁହିତା କିମ୍ବା ଭଗିନୀଙ୍କୁ ଯବନ-କରରେ ସମର୍ପଣ କରିବାକୁ ଅସ୍ୱୀକୃତ ହୋଇଥିଲେ । ମୋଗଲଦ୍ୱାରା ବିତାଡ଼ିତ ହେଲେ ସୁଦ୍ଧା ସେ ନୂତନ ଦୁର୍ଗ ନିର୍ମାଣ କରି ସ୍ୱାଧୀନଭାବରେ ରାଜକାର୍ଯ୍ୟ ପରିଚାଳନ କଲେ; କିନ୍ତୁ ଯବନର ବଶ୍ୟତା ସ୍ୱୀକାର କଲେ ନାହିଁ । ଏଥିରେ ଅକବରଙ୍କ ମନରେ ଯେ କ୍ଷୋଭ ଓ କ୍ରୋଧର ସଞ୍ଚାର ହୋଇ ନ ଥିଲା, ଏମନ୍ତ ନୁହେଁ; କିନ୍ତୁ ସେ ଭଲରୂପେ ଜାଣିଥିଲେ ଯେ, ହଠାତ୍ ମେବାଡ଼ର ସ୍ୱାଧୀନତା ଅପହରଣ କରିବାକୁ ଗଲେ ରାଜପୁତ-ମାନେ ବିଚଳିତ ହୋଇପଡ଼ିବେ । ମୋଗଲ-ସାମ୍ରାଜ୍ୟର ତତ୍କାଳୀନ ଅବସ୍ଥାଦୃଷ୍ଟିରେ ରାଜପୁତମାନଙ୍କ ଶତ୍ରୁତା-ଅର୍ଜନ ସାମ୍ରାଜ୍ୟ ପକ୍ଷରେ ଅମଙ୍ଗଳକର ଥିଲା । ଏଣୁକରି ଅକବର ବାହ୍ୟ ନିଶ୍ଚେଷ୍ଟତା ପ୍ରକାଶ କରିବାକୁ ବାଧ୍ୟ ହୋଇଥିଲେ ।

ହିନ୍ଦୁମାନଙ୍କ ସହାନୁଭୂତି ଆକର୍ଷଣ କରିବା ନିମନ୍ତେ ସେ ହିନ୍ଦୁ ଓ ମୁସଲମାନମାନଙ୍କୁ ସମାନ ଚକ୍ଷୁରେ ଦେଖିବାକୁ ଲାଗିଲେ । ତାଙ୍କ ଆଦେଶ କ୍ରମେ ଜିଜିୟା ପ୍ରଭୃତି ପ୍ରପୀଡ଼କ କରଗୁଡ଼ିକ ରହିତ ହେଲା । ରାଜ-କାର୍ଯ୍ୟରେ କର୍ମଚାରୀ ନିର୍ବାଚନ-ସମୟରେ ହିନ୍ଦୁମାନଙ୍କ ଦାବି ଅବହେଳିତ ହେଲାନାହିଁ । କି ହିନ୍ଦୁ, କି ମୁସଲମାନ, ସମସ୍ତେ ଅକବରଙ୍କ ଶାସନର ପ୍ରଶଂସା କରି ମୋଗଲ-ସାମ୍ରାଜ୍ୟର ଉନ୍ନତି କାମନା କରିବାକୁ ଲାଗିଲେ । ଭାରତବର୍ଷର ଅଧିକାଂଶ ରାଜ୍ୟ ମୋଗଲର ପଦାନତ ହେଲା ।

ପ୍ରତାପସିଂହ ଦେଶର ଏ ଦୁର୍ଦ୍ଦଶା ଦେଖି କ୍ଷୋଭରେ ଅସ୍ଥିର ହୋଇଗଲେ । ଅକବର ମାୟାଜାଲ ବିସ୍ତାର କରି ହିନ୍ଦୁମାନଙ୍କୁ କାର୍ଯ୍ୟଶୂନ୍ୟ କରି ପାରିଛନ୍ତି । ଭାରତବର୍ଷରୁ ହିନ୍ଦୁଶକ୍ତି ଲୋପ ପାଇବାକୁ

ଆଉ ବେଶି ବିଳମ୍ବ ନାହିଁ । ସମସ୍ତ ରାଜସ୍ଥାନରେ କେବଳ ପ୍ରତାପସିଂହ ଯବନର ଦାସତ୍ୱ ସ୍ୱୀକାର କରିନାହାନ୍ତି । କିନ୍ତୁ କଣ ହେବ—ତାଙ୍କର ସେ ସ୍ୱାଧୀନତା ଆଉ ବେଶି ଦିନ ରହିପାରିବ କି ? ମେବାଡ଼ର ହୃତ୍ପିଣ୍ଡ ଯେ ଯବନର ହସ୍ତଗତ ହୋଇସାରିଅଛି । ଆଉ ଅବଶିଷ୍ଟ ଯିବାକୁ କେତେକାଳ ଲାଗିବ ? ଯେତକ ଅଛି, ସେତକ ମଧ୍ୟ ରକ୍ଷିବାପାଇଁ କାହାର ଆଗ୍ରହ ଦେଖାଯାଉନାହିଁ । ହିନ୍ଦୁମାନେ ଭାରତବର୍ଷରେ ଯବନ-ସାମ୍ରାଜ୍ୟ ପ୍ରତିଷ୍ଠିତ କରିବା ନିମନ୍ତେ ଯବନ ସହିତ ମିଳିତ ହୋଇଛନ୍ତି । ତେବେ ହିନ୍ଦୁଶକ୍ତି କଣ ସତେ ଯବନର କବଳରେ ଲୟପ୍ରାପ୍ତ ହେବ ? ସନାତନ ହିନ୍ଦୁଜାତି ଆଉ କଣ ଉଠିବନାହିଁ ? ହିନ୍ଦୁଦେଶର ଭାଗ୍ୟାକାଶରୁ ସ୍ୱାଧୀନତା-ରବି କଣ ଚିରକାଳ ନିମନ୍ତେ ଅସ୍ତମିତ ହେବ ? ପ୍ରତାପସିଂହ ଆଉ ଭାବିପାରିଲେନାହିଁ । ତାଙ୍କ ଚକ୍ଷୁ ଲୋତକରେ ପୂର୍ଣ୍ଣ ହୋଇଗଲା ।

ଅକବରଙ୍କ ସହିତ ଯୁଦ୍ଧ କରି ଯବନ-ଶକ୍ତିର ମୂଳୋତ୍ପାଟନ କରିବା ପ୍ରତାପଙ୍କ ପରି ରାଜ୍ୟହୀନ ରାଜାପକ୍ଷରେ ଏକାବେଳକେ ଅସମ୍ଭବ । ତେବେ କଣ ଯବନ ସହିତ ମିଳିତ ହେବା ବାଞ୍ଛନୀୟ ? ହିନ୍ଦୁମାନେ ବାବରଙ୍କୁ ବିଦେଶୀୟ ଶତ୍ରୁ ବୋଲି ଭାବୁଥିଲେ; କିନ୍ତୁ ଅକବର ସେମାନଙ୍କ ଚକ୍ଷୁରେ ଖାଣ୍ଟି ଭାରତବାସୀ । ଭାରତର ସ୍ୱାର୍ଥ ସହିତ ଅକବରଙ୍କ ସ୍ୱାର୍ଥ ଘନିଷ୍ଠଭାବରେ ଜଡ଼ିତ । ସେ ଅନ୍ୟଧର୍ମାବଲମ୍ବୀ ହେଲେ ସୁଦ୍ଧା ଭାରତବର୍ଷ ତାହାଙ୍କର ମାତୃଭୂମି । କେବଳ ଅକବର କାହିଁକି, ଭାରତବର୍ଷର ସମସ୍ତ ମୁସଲମାନ ଭାରତର ସନ୍ତାନ । ସେମାନେ ଆଉ ହିନ୍ଦୁମାନଙ୍କ ଶତ୍ରୁ ନୁହନ୍ତି । ବର୍ତ୍ତମାନ ହିନ୍ଦୁମୁସଲମାନ ଏକ ମାତାର ସନ୍ତାନ । ଅକବର ଏହି ଦୁଇ ଜାତିର ସମ୍ମିଳନରେ ଭାରତବର୍ଷରେ ମହାଭାରତ-ସାମ୍ରାଜ୍ୟ ପ୍ରତିଷ୍ଠିତ କରିବାକୁ ଇଚ୍ଛୁକ । ସେ ସାମ୍ରାଜ୍ୟରେ ହିନ୍ଦୁ ଓ ମୁସଲମାନ ଉଭୟଙ୍କ ସମାନ ଅଧିକାର ରହିବ । ଉଭୟ ଜାତିର ରାଜନୈତିକ ଏକତା ଦେଶ

ପକ୍ଷରେ ସମ୍ପୂର୍ଣ୍ଣ ମଙ୍ଗଳଜନକ । ଏହି ଏକତା ବିରୁଦ୍ଧରେ ଛିଡ଼ା ହେବା ପ୍ରତାପଙ୍କ ପକ୍ଷରେ ଅନୁଚିତ ହେବନାହିଁ କି ?

କିନ୍ତୁ ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ପ୍ରକୃତ ଏକତା ସଂସ୍ଥାପିତ ହୋଇଅଛି କି ? ମୁସଲମାନମାନେ ହିନ୍ଦୁମାନଙ୍କୁ ଭ୍ରାତୃଦୃଷ୍ଟିରେ ଦେଖୁଅଛନ୍ତି କି ? ଅବଶ୍ୟ ଅକବର ମୁଖରେ ଏହା ସ୍ୱୀକାର କରୁଅଛନ୍ତି ଏବଂ ରାଜ-କାର୍ଯ୍ୟରେ ମଧ୍ୟ ଏହା ଅକ୍ଷରେ ଅକ୍ଷରେ ପାଳିତ ହେଉଅଛି । କିନ୍ତୁ ଅକବରଙ୍କ ଏ ଉଦାର ଘୋଷଣାର ଅନ୍ତରାଳରେ କୌଣସି ଗୂଢ଼ ଉଦ୍ଦେଶ୍ୟ ପ୍ରଚ୍ଛନ୍ନ-ଭାବରେ ନିହିତ ନାହିଁ ବୋଲି କିଏ କହିପାରେ ? ଭାରତବର୍ଷରେ ମୋଗଲ-ସାମ୍ରାଜ୍ୟ ସଂସ୍ଥାପିତ ହେଲା ଉତ୍ତାରୁ ପୁନର୍ବାର ହିନ୍ଦୁମାନେ ଅତ୍ୟାଚାରିତ ହୋଇପାରନ୍ତି । ଅକବରଙ୍କ ମୁସଲମାନ ପ୍ରଜାମାନେ ହିନ୍ଦୁମାନଙ୍କୁ ଭ୍ରାତୃଜ୍ଞାନ କରୁନାହାନ୍ତି । ସେମାନଙ୍କ ମତରେ ସେମାନେ ଶାସକଜାତିର ଅନ୍ତର୍ଗତ । ହିନ୍ଦୁମାନେ ସେମାନଙ୍କଦ୍ୱାରା ବିଜିତ—ଏଣୁକରି ସମାନାଧି-କାରପ୍ରାପ୍ତିର ଅନୁପଯୁକ୍ତ । ସେମାନେ ହିନ୍ଦୁମାନଙ୍କୁ ଶାସନ କରିବେ ଓ ହିନ୍ଦୁମାନେ ନୀରବରେ ସେମାନଙ୍କର ସମସ୍ତ ଅତ୍ୟାଚାର ସହ୍ୟ କରିବେ । ଗୋଲାମ ଓ ନବାବ ମଧ୍ୟେ ଯେ ସମ୍ପର୍କ, ହିନ୍ଦୁ ଓ ମୁସଲମାନ ମଧ୍ୟରେ ସେହି ସମ୍ପର୍କ । ଏବେ ସୁଦ୍ଧା ସୁବିଧା ପାଇଲେ ମୁସଲମାନମାନେ ହିନ୍ଦୁ ଦେବାଳୟ ଓ ଗୋଜାତି ଉପରେ ଅତ୍ୟାଚାର କରିବାକୁ ଛାଡ଼ୁନାହାନ୍ତି—ହିନ୍ଦୁମାନଙ୍କୁ ପରମ ଶତ୍ରୁଜ୍ଞାନରେ ଅନେକ ଦୂରରେ ରଖୁଅଛନ୍ତି । ଅକବର ଯେ ଏକତାର ସୂତ୍ରପାତ କରିଅଛନ୍ତି, ତାହା କେବଳ ଭଣ୍ଡାମି । ନିଜ ଉଦ୍ଦେଶ୍ୟର ସିଦ୍ଧିପର୍ଯ୍ୟନ୍ତ ସେ ଏହି ବେଶ ଧାରଣ କରିପାରନ୍ତି, ହିନ୍ଦୁମାନଙ୍କ ଆଖିରେ ଧୂଳି ପକାଇ ସେମାନଙ୍କୁ ଅନ୍ଧ କରିବା ପର୍ଯ୍ୟନ୍ତ ଏହି ସାମ୍ୟବ୍ରତ ଅବଲମ୍ବନ କରିପାରନ୍ତି; କିନ୍ତୁ ଯେଉଁଦିନ ତାହାଙ୍କର ଉଦ୍ଦେଶ୍ୟ ସଫଳ ହେବ ଏବଂ ମୋଗଲ-ସାମ୍ରାଜ୍ୟ ଦୃଢ଼ତମ ଭିତ୍ତି ଉପରେ ସଂସ୍ଥାପିତ

ହେବ, ସେ ପୁନର୍ବାର ହିନ୍ଦୁମାନଙ୍କୁ ପରିହାର କରିବେ । ସେତେବେଳକୁ ମୋଗଲ-ଶକ୍ତିକୁ ଦମନ କରିବା ନିମନ୍ତେ ହିନ୍ଦୁମାନଙ୍କର ଆଉ ଶକ୍ତି ନ ଥିବ । ସେମାନେ ଚିରକାଳ ପର୍ଯ୍ୟନ୍ତ ଅସୀମ ନିର୍ଯ୍ୟାତନ ଭୋଗକରିବେ ଏବଂ ଘର ଉଦରର ପୂର୍ତ୍ତିନିମନ୍ତେ ଯବନର ଦ୍ୱାରସ୍ଥ ହେଉଥିବେ । ଯବନ ହିନ୍ଦୁଦେଶରେ ହିନ୍ଦୁମାନଙ୍କ ସାହାଯ୍ୟରେ ଏକାଧିପତ୍ୟ ସ୍ଥାପନ କରିବ, ଆଉ ହିନ୍ଦୁମାନେ ନିଜ ପୈତୃକ ଦେଶରେ ଖଣ୍ଡମୁଠାକ ପାଇଁ ଯବନର ହାତକୁ ଅନାଇ ବସିବେ । ପ୍ରତାପସିଂହଙ୍କର ସଂଶୟ ଭଞ୍ଜନ ହେଲା । ସେ ପ୍ରତିଜ୍ଞା କଲେ ଯେ, ଯବନ-ଶକ୍ତିର ଲୋପ ନିମନ୍ତେ ତାଙ୍କର ସମଗ୍ର ଶକ୍ତି ନିୟୋଜିତ କରିବେ ।

କିନ୍ତୁ ଏ କାର୍ଯ୍ୟ ବଡ଼ ସହଜ ନୁହେ । ଯବନଶକ୍ତି ସାମାନ୍ୟ ଧୂଳିକଣା ନୁହେ ଯେ, ପ୍ରତାପସିଂହ ଫୁତ୍କାରରେ ତାହା ଉଡ଼ାଇଦେବେ । ପ୍ରତାପ-ସିଂହଙ୍କ ଭାବାପନ୍ନ କେତେ ଜଣ ହିନ୍ଦୁ ଭାରତବର୍ଷରେ ଅଛନ୍ତି ? ମୋଗଲ ସମ୍ରାଟଙ୍କ ପ୍ରସାଦ-ଲାଭ-ଆଶାରେ ମୁଖ୍ୟ ମୁଖ୍ୟ ହିନ୍ଦୁ ରାଜାମାନେ ମୋଗଲ ଦରବାରର ଆଶ୍ରୟ ଗ୍ରହଣ କରିଅଛନ୍ତି । ସେମାନଙ୍କ ନେତ୍ରରେ ଦିଲ୍ଲୀଶ୍ୱର ସ୍ୱୟଂ ଜଗଦୀଶ୍ୱର ଅଟନ୍ତି । ଦିଲ୍ଲୀଶ୍ୱର ସେମାନଙ୍କ ସର୍ବସ୍ୱ ଲୁଣ୍ଠନ କରି ସେମାନଙ୍କୁ ମିଥ୍ୟା ସମ୍ମାନଦ୍ୱାରା ବଶୀଭୂତ କରିଅଛନ୍ତି । ସେମାନେ ଜାଣନ୍ତି ଯେ, ଦିଲ୍ଲୀଦରବାରରେ ସେମାନଙ୍କ ପ୍ରଭାବ ଅପ୍ରତିହତ ଏବଂ ସମ୍ରାଟ ସେମାନଙ୍କୁ ବିଶେଷ ଆଦର କରନ୍ତି । ଯେତେବେଳେ ମନୁଷ୍ୟ ଆତ୍ମ-ସମ୍ମାନ ବିକ୍ରୟ କରି ପରର ଅନୁଗ୍ରହାପେକ୍ଷୀ ହୁଏ, ସେତେବେଳେ ତାହାର ସମସ୍ତ ବୃତ୍ତିବୃନ୍ଦ କଳୁଷିତ ହୁଏ । ସେ ଯେତେ ଶକ୍ତି ସମ୍ପନ୍ନ ହେଉ ପଛକେ ଆତ୍ମ-ସମ୍ମାନକୁ ପ୍ରକୃତ ପନ୍ଥାବଲମ୍ବନରେ ଅସମର୍ଥ ହୁଏ । ଦିଲ୍ଲୀଦରବାରସ୍ଥ ରାଜାମାନେ ଅସୀମ ଶକ୍ତିଶାଳୀ । ସେମାନେ ଇଚ୍ଛା କଲେ ମୋଗଲ ସିଂହାସନ ମୁହୂର୍ତ୍ତମଧ୍ୟରେ ଟଳିଯାନ୍ତା । କିନ୍ତୁ ମୋଗଲର ପ୍ରସାଦ-ଲାଭ

ସେମାନଙ୍କୁ ଏକାବେଳକେ ଅନ୍ଧ କରିଦେଇଅଛି । ସେମାନେ ମୋଗଲ-ସେବା-କାର୍ଯ୍ୟରେ ଅନେକ ଦୂର ଅଗ୍ରସର ହୋଇସାରିଛନ୍ତି । ଅଧୁନା ସେମାନଙ୍କର ପ୍ରତ୍ୟାବର୍ତ୍ତନ ଏକାବେଳକେ ଅସମ୍ଭବ । ପ୍ରତାପସିଂହ ଏକୁଟିଆ କିପରି ମୋଗଲ ବିରୁଦ୍ଧରେ ଛିଡ଼ା ହେବେ ? ସେଥିନିମନ୍ତେ ଯେଉଁ ଧନବଳ ଓ ଜନବଳ ଆବଶ୍ୟକ, ପ୍ରତାପଙ୍କର ତାହା ଅଛି କି ?

ମୋଗଲଙ୍କୁ ନିଜଠାରୁ ଶ୍ରେଷ୍ଠ ଭାବି ହିନ୍ଦୁମାନେ ନିଜ ନିଜ ରୀତିନୀତି, ଆଚାରବ୍ୟବହାର, ବେଶଭୂଷା ସମସ୍ତ ପରିତ୍ୟାଗ କରୁଅଛନ୍ତି । ଦେଶରେ ବିଳାସର ସ୍ରୋତ କ୍ଷିପ୍ରଗତିରେ ପ୍ରବାହିତ ହେଉଅଛି । ଦେଶର ସ୍ୱାଧୀନତା-ରକ୍ଷା-କାର୍ଯ୍ୟ ଏହି ବିଳାସିମାନଙ୍କ ଦ୍ୱାରା ସଂସାଧିତ ହୋଇ ନ ପାରେ । ଯେ ସ୍ୱାର୍ଥତ୍ୟାଗ କରିବାକୁ ପ୍ରସ୍ତୁତ ନୁହେ, ଦେଶନିମନ୍ତେ ସନ୍ନ୍ୟାସ ଅବଲମ୍ବନ କରିବାକୁ ପଶ୍ଚାତ୍ପଦ, ସେ ଦେଶ-ସେବା-କାର୍ଯ୍ୟର ସମ୍ପୂର୍ଣ୍ଣ ଅନୁପଯୁକ୍ତ । ଲକ୍ଷାଧିକ ବିଳାସୀ ସୈନିକ ଯେଉଁ କାର୍ଯ୍ୟ କରିବାକୁ ଅସମର୍ଥ, ମୁଷ୍ଟିମେୟ ସ୍ୱାର୍ଥତ୍ୟାଗୀ ବୀର ତାହା ଅନାୟାସରେ କରିପାରିବେ । ପ୍ରତାପ ଏପରି ସ୍ୱାର୍ଥତ୍ୟାଗୀ ବୀରମାନଙ୍କ ସାହାଯ୍ୟରେ ଯବନ-ଶକ୍ତିର ଲୋପସାଧନ କରିବାକୁ କୃତସଂକଳ୍ପ ହେଲେ । ଦେଶର ପବିତ୍ର ଆହ୍ୱାନ ତାଙ୍କ କର୍ଣ୍ଣ-କୁହରରେ ପ୍ରତିଧ୍ୱନିତ ହେବାକୁ ଲାଗିଲା । ସେ ଦେଶନିମନ୍ତେ ଦାରିଦ୍ର୍ୟ ଅବଲମ୍ବନ କରିବାକୁ ନିଶ୍ଚୟ କଲେ । ଦାରିଦ୍ର୍ୟର ତୀବ୍ର କଶାଘାତରେ ହୃଦୟ ମନ ପବିତ୍ର ନ ହେଲେ ମନୁଷ୍ୟର ମନୁଷ୍ୟତ୍ୱ-ବିକାଶ ଏକାବେଳକେ ଅସମ୍ଭବ । ଏହି ମନୁଷ୍ୟତ୍ୱର ବିକାଶ ନିମନ୍ତେ ପ୍ରତାପ ଭୋଗନିକଟରୁ ଚିର-ବିଦାୟ ଗ୍ରହଣ କଲେ ।

ପ୍ରତାପସିଂହ ରାଜକୀୟ ପରିଚ୍ଛଦ ପରିତ୍ୟାଗପୂର୍ବକ ଗୈରିକ ବସନ ଧାରଣ କଲେ । ତାଙ୍କ ଶିରୋଦେଶରେ ଅଯତ୍ନ-ବର୍ଦ୍ଧିତ ଜଟାଭାର ଶୋଭା ପାଇବାକୁ ଲାଗିଲା । ରାଜଭୋଜ୍ୟ ସୁମିଷ୍ଟ ଖାଦ୍ୟ ଓ ଦୁଗ୍ଧଫେନନିଭ

ସୁକୋମଳ ଶଯ୍ୟାପରିବର୍ତ୍ତେ ସେ ସାମାନ୍ୟ ତଣ୍ଡୁଳାହାର ଓ ତୃଣଶଯ୍ୟାରେ ସନ୍ତୁଷ୍ଟ ରହିଲେ । ପ୍ରତାପଙ୍କ ପୂର୍ବେ କୌଣସି ରାଜା ସ୍ୱଦେଶ ନିମନ୍ତେ ଏପରି ଦୃଢ଼ ବ୍ରତ ଅବଲମ୍ବନ କରି ନ ଥିଲେ । ଦେଶର ସୁଦିନ ସମୟରେ ବିଳାସ ଶୋଭନୀୟ; କିନ୍ତୁ ଯେଉଁବେଳେ ଦେଶର ସମସ୍ତ ଅଧିବାସୀ ପରପଦଦଳିତ, ମନୁଷ୍ୟ କେଉଁ ପ୍ରାଣରେ ବିଳାସର ମଧୁମୟ କୋଡ଼ରେ ଶୟନ କରି ସୁଖ-ସ୍ୱପ୍ନ ଦେଖିବ ? ପ୍ରତାପସିଂହ ସର୍ବବିଧ ଭୋଗବିଳାସ ବିସର୍ଜ୍ଜନ କରି ଦାରିଦ୍ର୍ୟରୂପ ନୂତନ ଦୀକ୍ଷା ଗ୍ରହଣ କଲେ । ଯେଉଁମାନେ ଏହି ପଥର ପଥିକ ହେବାକୁ ଇଚ୍ଛୁକ, ପ୍ରତାପସିଂହ ସେମାନଙ୍କୁ ସ୍ୱୀୟ ଦଳଭୁକ୍ତ କରିବେ, ଏବଂ ସେମାନଙ୍କ ସାହାଯ୍ୟରେହିଁ ଦେଶରେ ସ୍ୱାଧୀନତାର ଶୁଭ୍ର ବୈଜୟନ୍ତୀ ଉଡ଼ାଇବେ । ଯେଉଁମାନେ ଏହି ପଥର ପଥିକ ହେବାକୁ ଅନିଚ୍ଛୁକ, ପ୍ରତାପସିଂହ ସେମାନଙ୍କ ସହିତ କୌଣସି ସମ୍ପର୍କ ରଖିବେ ନାହିଁ ।



# ତୃତୀୟ ପରିଚ୍ଛେଦ

# ଉଦ୍ୟୋଗ ପର୍ବ

ମନୁଷ୍ୟ ଯେତେଦିନ ପର୍ଯ୍ୟନ୍ତ ଜନନୀର ସର୍ବଦୁଃଖହର କୋଡ଼ରେ ସୁଖରେ କାଳଯାପନ କରୁଥାଏ, ସେତେ ଦିନ ପର୍ଯ୍ୟନ୍ତ ସେ ଜନନୀର ମୂଲ୍ୟ ବୁଝି ନ ଥାଏ । କିନ୍ତୁ ଯେଉଁ ଦିନ ତାର ମାତୃବିୟୋଗ ଘଟେ, ସେହି ଦିନ ତାହା ମନରେ ଜନନୀର ସ୍ନେହମୟୀ ମୂର୍ତ୍ତି ଅତି ଉଜ୍ଜ୍ୱଳଭାବରେ ଅଙ୍କିତ ହୁଏ । ସେହି ଦିନ ସେ ବୁଝିପାରେ ଯେ, ମା'ଠାରୁ ବଳି ସଂସାରରେ ଆଉ କେହି ନାହିଁ । ଏହି ଏକାକ୍ଷରି "ମା" ଶବ୍ଦରେ ନିହିତ ଭାବକୁ ବ୍ୟକ୍ତ କରିବାକୁ କବିର ଲେଖନୀ କିମ୍ବା ବକ୍ତାର ଜିହ୍ୱାରେ ଶକ୍ତି ନାହିଁ । ଯାହା ମନୁଷ୍ୟ ପକ୍ଷରେ ସତ୍ୟ, ତାହା ଜାତି ପକ୍ଷରେ ମଧ ସତ୍ୟ । ଦେଶ ସ୍ୱାଧୀନତା-ରବିର ବିମଳ ଆଲୋକରେ ଉଦ୍ଭାସିତ ହେଉଥିବା ପର୍ଯ୍ୟନ୍ତ କୌଣସି ଜାତି ମାତୃଭୂମିର ପ୍ରକୃତ ମୂଲ୍ୟ ବୁଝି ନ ଥାଏ; କିନ୍ତୁ ଯେଉଁ ଦିନ ସ୍ୱାଧୀନତା-ରବି ଅସ୍ତମିତ ହେବା ସଙ୍ଗେ ସଙ୍ଗେ ମାତୃଭୂମି ପରପଦଦଳିତ ହୁଏ, ସେହି ଦିନ ମାତୃଭୂମିର ମହତ୍ତ୍ୱ ଜାତିର ହୃଦୟଙ୍ଗମ ହୁଏ । ମାତୃହୀନ ଶିଶୁ ମାତୃଦର୍ଶନ ନିମନ୍ତେ ଯେପରି ବ୍ୟାକୁଳତା ପ୍ରକାଶ କରିଥାଏ, ଜାତି ମଧ ସେହିପରି ସ୍ୱାଧୀନତାର ପୁନରୁଦ୍ଧାର ନିମନ୍ତେ ବ୍ୟାକୁଳ ହୁଏ ।

ପ୍ରତାପସିଂହ କେବଳ ମାତୃହୀନ ନୁହନ୍ତି; ତାଙ୍କ ରାଜ୍ୟ ମଧ ଶତ୍ରୁର କରାଳ କବଳରେ ନିକ୍ଷିପ୍ତ ହୋଇଅଛି । ଯେଉଁଠାରେ ସଭ୍ୟତାର ଆଲୋକ,

ସର୍ବପ୍ରଥମେ ପ୍ରବେଶ କରିଥିଲା, ସେହି ଦେଶ ଜ୍ଞାନ, ଧର୍ମ ଓ ଗୌରବର ଲୀଳା-ନିକେତନରୂପେ ଅବହମାନ କାଳରୁ ପ୍ରସିଦ୍ଧି ଲାଭ କରି ଆସିଅଛି, ସେହି ହିମାଚଳ-କିରୀଟିନୀ, ବିନ୍ଧ୍ୟ-ମେଖଳା, ସାଗର-ବିଧୌତ-ଚରଣା ଭାରତଭୂମି ଆଜି ଯବନର କ୍ରୀତଦାସୀ ! ମାତୃଭୂମିର ଶସ୍ୟଶ୍ୟାମଳ କାନ୍ତି ଦାରୁଣ ବିଷାଦର ଘାତପ୍ରତିଘାତରେ ମଳିନତା ପ୍ରାପ୍ତ ହୋଇଅଛି । ଜନ୍ମ-ଭୂମିର ଏହି ଶୋଚନୀୟ ଦଶା, ସ୍ୱଦେଶ ଜନନୀଙ୍କ ମର୍ମନ୍ତୁଦ କରୁଣ ବିଳାପ ପ୍ରତାପସିଂହଙ୍କ ସମଗ୍ର ପ୍ରାଣ ଅଧିକାର କରି ତାଙ୍କୁ ଶୋକରେ ଅଧୀର କରି-ପକାଇଲା । ମେବାଡ଼ର ମାଟିରେ, ମେବାଡ଼ର ପର୍ବତୋପତ୍ୟକାରେ ବିଷା-ଦର ତାମସୀ ଛାୟା ଅବଲୋକନ କରି ତାଙ୍କ ହୃଦୟ ଶତଧା ବିଦୀର୍ଣ୍ଣ ହୋଇଗଲା । ମେବାଡ଼-ମୃତ୍ତିକାର ଶାନ୍ତିପ୍ରଦାୟିନୀ କାନ୍ତି, ମେବାଡ଼ ପର୍ବ-ତର ଉନ୍ନତ ଗମ୍ଭୀର ସୌନ୍ଦର୍ଯ୍ୟ ସର୍ବତୋଭାବେ ଅନ୍ତର୍ହିତ ହୋଇଅଛି । ଚତୁର୍ଦ୍ଦିଗରେ ଦୁଃଖ, ଦୈନ୍ୟ ଓ ନିରାଶା ! କିନ୍ତୁ ଏହି ମେବାଡ଼ ତ ଚିର-କାଳ ଏପରି ନ ଥିଲା । ଗୌରବର ଉଜ୍ଜ୍ୱଳ କିରୀଟ ପରିଧାନ କରି, ସ୍ୱାଧୀ-ନତାର ବିମଳ ଆଲୋକରେ ଉଦ୍ଭାସିତ ହୋଇ, ମେବାଡ଼ ଦିବ୍ୟ ଶୋଭାରେ ବିମଣ୍ଡିତ ଥିଲା । ତେବେ ଅକସ୍ମାତ୍ ଏପରି ହେଲା କାହିଁକି ? କେଉଁ ତସ୍କର ଆସି ମେବାଡ଼ର ସୁଖରତ୍ନ ଅପହରଣ କଲା ? ପ୍ରତାପ ମେବାଡ଼ର ସନ୍ତାନ । ମେବାଡ଼ ଜନନୀଙ୍କ ଶୋଣିତବିନ୍ଦୁରେ ତାଙ୍କ ଶରୀର ପୁଷ୍ଟ । କିନ୍ତୁ ସେହି ମେବାଡ଼ ଆଜି ପ୍ରତାପସିଂହଙ୍କ ଜୀବିତାବସ୍ଥାରେ ଏଡା ଦୁର୍ଦ୍ଦଶା ପ୍ରାପ୍ତ ହୋଇଅଛି । ପ୍ରତାପ ସବୁ ସହିପାରନ୍ତି; କିନ୍ତୁ ଜନନୀର ଦୁଃଖ, ଚିରାରାଧ୍ୟ ମେବାଡ଼ର ଦୁଃଖ କଦାପି ଜୀବନରେ ସହି ରହିପାରିବେ ନାହିଁ । ପ୍ରାଣ ଯାଉ, କ୍ଷତି ନାହିଁ; ମାଟିର ଶରୀର ମାଟିରେ ବିଲୀନ ହୋଇଯାଉ, କ୍ଷତି ନାହିଁ; ତଥାପି ମେବାଡ଼କୁ ଦୁର୍ଦ୍ଦଶାରାହୁର ଭୀଷଣ ଗ୍ରାସରୁ ବିମୁକ୍ତ କରିବା ନିମନ୍ତେ ସେ କୌଣସି ଉଦ୍ୟମକୁ ଅସାଧ୍ୟ ମନେ କରିବେ ନାହିଁ—

କୌଣସି ଭ୍ୟାଗକୁ ଅସମ୍ଭବ ଜ୍ଞାନକରବେ ନାହିଁ । ଜୀବନବ୍ୟାପୀ ପରି-ଶ୍ରମ କରି ଦେଶର ଦାସତ୍ୱ-ନିଗଡ଼ ଛିନ୍ନ କରିବେ ।

ଅକବରଙ୍କ ବିରୁଦ୍ଧରେ ସମରଯାତ୍ରା କରିବାପୂର୍ବରୁ ଦେଶକୁ ପ୍ରଥମେ ସେଥିନିମନ୍ତେ ପ୍ରସ୍ତୁତ କରିବା ଦରକାର । ଯେଉଁ ଦୁର୍ଗଗୁଡ଼ିକ ମେବାଡ଼ର ଅଧୀନରେ ଅଛି, ସେଗୁଡ଼ିକର ଜୀର୍ଣ୍ଣସଂସ୍କାର କରିବାକୁ ହେବ । ପ୍ରଜାମାନଙ୍କୁ ଅସ୍ତ୍ରଶସ୍ତ୍ରରେ ନିପୁଣ କରିବା ସଙ୍ଗେ ସଙ୍ଗେ ଦେଶରେ ଖାଦ୍ୟଦ୍ରବ୍ୟ ଓ ଅସ୍ତ୍ରଶସ୍ତ୍ର ପ୍ରଚୁର ପରିମାଣରେ ରଖିବାକୁ ହେବ । ପ୍ରଥମେ ଏହି ସବୁ କାର୍ଯ୍ୟ ପ୍ରତାପସିଂହଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସେ ଅକ୍ଳାନ୍ତ ପରିଶ୍ରମ ସହକାରେ ମେବାଡ଼କୁ ସାମରିକ ସଜ୍ଜାରେ ସଜ୍ଜିତ କରିବାକୁ ଲାଗିଲେ ।

ପ୍ରଜା ଓ ସର୍ଦ୍ଦାରମାନେ କୌଣସି ଉଦ୍ଦେଶ୍ୟ ନ ଥାଇ ପ୍ରତାପଙ୍କୁ ମେବାଡ଼ର ସିଂହାସନରେ ବସିବାକୁ ଅନୁରୋଧ କରି ନ ଥିଲେ । ସେ-ମାନଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ, ତାଙ୍କ ଦ୍ୱାରାହିଁ ଦେଶର ଲୁପ୍ତ ଗୌରବର ପୁନରୁଦ୍ଧାର ହେବ । ଏଣୁକରି ସେମାନେ ପ୍ରତାପଙ୍କ ଆଦେଶାନୁସାରେ ଜ୍ୱଳନ୍ତ ଅଗ୍ନିକୁଣ୍ଡରେ ସୁଦ୍ଧା ଲମ୍ଫପ୍ରଦାନ କରିବାକୁ ପ୍ରସ୍ତୁତ ଥିଲେ । ଯେତେବେଳେ ପ୍ରତାପ ମେବାଡ଼ର ପ୍ରଜାମାନଙ୍କ ଆଗରେ ତାଙ୍କ ନବା-ନୁଷ୍ଠିତ ଦାରିଦ୍ର୍ୟବ୍ରତ ଉତ୍ଥାପିତ କଲେ, ସେମାନେ ଆନନ୍ଦସହକାରେ ତାହା ଗ୍ରହଣ କରିବାକୁ ସ୍ୱୀକୃତ ହେଲେ । ଦେଶନିମନ୍ତେ ସେମାନେ ସମସ୍ତ ଭୋଗବିଳାସ ପରିତ୍ୟାଗ କରି ଦାରିଦ୍ର୍ୟର ମହନୀୟ କ୍ରୋଡ଼ରେ କାଳାତିପାତ କରିବାକୁ ପ୍ରତିଜ୍ଞାବଦ୍ଧ ହେଲେ । ରାଣାଙ୍କ ଭାର୍ଯ୍ୟା, ପୁତ୍ର, ଦୁହିତା ପ୍ରଭୃତି ସମସ୍ତେ ଏହି ବ୍ରତ ଗ୍ରହଣ କଲେ । ଏହି ମରଣଭୁକ୍ତକାରୀ ପ୍ରଜାମାନଙ୍କ ସାହାଯ୍ୟରେ ଅନାୟାସରେ ଯବନନିପାତ କରିବା ବିଷୟରେ ପ୍ରତାପଙ୍କ ମନରେ ଆଉ କୌଣସି ସନ୍ଦେହ ରହିଲାନାହିଁ ।

କିଛୁଦିନ ପୂର୍ବେ ଯେଉଁ ମେବାଡ଼ ମୁମୂର୍ଷୁ ଅବସ୍ଥାରେ ପଡ଼ି ରହି-ଥିଲା—ବିଳାସର ଖରସ୍ରୋତରେ ଭାସି ସମସ୍ତ କର୍ତ୍ତବ୍ୟାକର୍ତ୍ତବ୍ୟଜ୍ଞାନ ବିସ୍ମୃତ ହୋଇଥିଲା, ଆଜି ପ୍ରତାପଙ୍କ ଯୋଗେ ସେଠାରେ ନୂତନ ପ୍ରାଣର ସ୍ପନ୍ଦନ ଅନୁଭୂତ ହେବାକୁ ଲାଗିଲା । ଯେପରି ବସନ୍ତର ସମାଗମରେ ଦିଗଙ୍ଗନାଗଣ ନବକିଶଳୟରୂପ ଶାଢ଼ୀ ବସନ ପରିଧାନ କରି କୋକିଳ-କଣ୍ଠରେ ସୁଲଳିତ ପଞ୍ଚମତାନରେ ସ୍ୱୀୟ ମନୋଗତ ହର୍ଷୋଲ୍ଲାସ ଅଭିବ୍ୟକ୍ତ କରନ୍ତି, ସେହିପରି ଆଜି ମେବାଡ଼ବାସୀ ସାମନ୍ତଙ୍କ ରଣଭେରୀ-ନିନାଦରେ, ସୈନିକମାନଙ୍କ ଅସ୍ତ୍ରଝନତ୍କାରରେ ଆନନ୍ଦରେ ବିହ୍ୱଳ ହୋଇଗଲେ । ଏହିପରି ଉତ୍ସାହ ମେବାଡ଼ରେ ଏଥିପୂର୍ବେ କେବେ ପରିଦୃଷ୍ଟ ହୋଇ ନ ଥିଲା । ନିରବଚ୍ଛିନ୍ନ ସୁଖଭୋଗ ଜଗଦ୍‌ବାସୀ ସମସ୍ତଙ୍କ ଚରମ ଲକ୍ଷ୍ୟ ହେଲେ ସୁଦ୍ଧା ତାହା କ୍ରମେ ପରିବର୍ତ୍ତନାଭାବରୁ ପ୍ରାଣଶୂନ୍ୟ ହୋଇପଡ଼େ । ନିରବଚ୍ଛିନ୍ନ ଦିବସ ଆମ୍ଭମାନଙ୍କ ଭାଗ୍ୟରେ କସ୍ମିନ୍‌କାଳେ ଘଟୁନାହିଁ; କିନ୍ତୁ ଆମ୍ଭମାନଙ୍କ ସମ୍ପୂର୍ଣ୍ଣ ବିଶ୍ୱାସ ଯେ, ଉତ୍ତର ଓ ଦକ୍ଷିଣ ମେରୁପ୍ରଦେଶର ଲୋକେ ବର୍ଷମଧ୍ୟରେ ଛ'ମାସକାଳ ଦିବସ କ୍ରମାଗତ ଭୋଗକରି କ୍ରମେ ବିରକ୍ତ ହୋଇପଡ଼ୁଥିବେ । ଗୋଟିଏ ଅବସ୍ଥାର ଅବସାନ ପରେ ଅବସ୍ଥାନ୍ତରର ସମାଗମ ହେଲେ ମନରେ ନବୀନ ଆଶା ଓ ସ୍ଫୂର୍ତ୍ତିର ସଞ୍ଚାର ହୋଇଥାଏ; କିନ୍ତୁ ଯଦି ଏହି ନବୀନ ଅବସ୍ଥା ସର୍ବ-ଦୁଃଖର ଆଧାର ହୋଇଥାଏ, ତାହାହେଲେ ମନରେ ଘୋର ଆତଙ୍କ ଉପସ୍ଥିତ ହୁଏ । ଦୁଃଖରେ ଦୁଃଖବୋଧ ଉଦ୍‌ବୁଦ୍ଧ ନ ହେବାଯାଏ ଏହି ଅବସ୍ଥାର ପରିବର୍ତ୍ତନନିମନ୍ତେ ମନୁଷ୍ୟ କୌଣସି ଚେଷ୍ଟା କରେନାହିଁ । ଈଶ୍ୱରାନୁଗ୍ରହବଶତଃ କ୍ରମେ ଯେତେବେଳେ ଦୁଃଖାବସ୍ଥାର ପରିବର୍ତ୍ତନ ଆରମ୍ଭ ହୁଏ, ମନୁଷ୍ୟ ନବୀନ ଉତ୍ସାହରେ ମାତିଉଠି ଦୁର୍ଦ୍ଦଶା ବିରୁଦ୍ଧରେ ପ୍ରବଳ ସଂଗ୍ରାମରେ ପ୍ରବୃତ୍ତ ହୁଏ ।

ଏହି ପ୍ରାକୃତିକ ନିୟମର ବଶବର୍ତ୍ତୀ ହୋଇ ଆଜି ମେବାଡ଼ବାସୀ ଅନନୁଭୂତପୂର୍ବ ଅଦମ୍ୟୋତ୍ସାହରେ ମାତି ଉଠିଛନ୍ତି । ଯବନଙ୍କୁ ସ୍ୱଦେଶରୁ ବିତାଡ଼ିତ କରିବା ନିମନ୍ତେ ସମସ୍ତେ ଅଣ୍ଟା ଭିଡ଼ି ଛିଡ଼ା ହୋଇଛନ୍ତି । ରଣାଙ୍ଗନରେ ପ୍ରାଣବଳି ଦେବା ନିମନ୍ତେ ସମସ୍ତେ ପ୍ରସ୍ତୁତ । ଯବନ-ହସ୍ତରେ ପ୍ରାଣ ଯିବ ପଛକେ, ସେମାନେ ଯବନର ଭୃତ୍ୟ ହୋଇ ରହିବେ ନାହିଁ । ଏଥିପାଇଁ ଯେତେଦୂର ସ୍ୱାର୍ଥତ୍ୟାଗ କରିବାକୁ ପଡ଼ୁ, ଚିନ୍ତା ନାହିଁ । ଦେଶର ମୁଖ ମଳିନ ଥିବା ସମୟରେ ସେମାନେ କଦାପି ଆତ୍ମସୁଖରେ ମନୋନିବେଶ କରିବେ ନାହିଁ । ଯବନଙ୍କର ପ୍ରଲୋଭନରେ କିମ୍ବା କୁଟିଳ ଭ୍ରୂକୁଟି ସେମାନଙ୍କୁ ଏହି ପଥରୁ ବିଚଳିତ କରିପାରିବ ନାହିଁ ।

ଯେଉଁ ରାଜାମାନେ ଆଗରୁ ଯବନର ଦାସତ୍ୱ ସ୍ୱୀକାର କରିସାରି-ଥିଲେ, ସେମାନେ ଏହି ସବୁ କାର୍ଯ୍ୟ ଦେଖି ବିଷମ ସମସ୍ୟାରେ ପଡ଼ିଲେ । ସ୍ୱଦେଶର ସ୍ୱାଧୀନତାରକ୍ଷା ନିମନ୍ତେ ପ୍ରତାପଙ୍କ ଉଦ୍ଭାବିତ ପନ୍ଥା ଯେ ସର୍ବୋତ୍କୃଷ୍ଟ, ଏ ବିଷୟରେ କାହାରି ମତଦ୍ୱୈଧ ନ ଥିଲା । ଆମ୍ଭେମାନେ ଆଗରୁ କହିଅଛୁଁ ଯେ, ସେମାନେ ଅସୀମ ଧୀଶକ୍ତିସମ୍ପନ୍ନ ଓ ପରାକ୍ରମଶାଳୀ ଥିଲେ । ଯବନର ଶୁଷ୍କ ହାସ୍ୟରେ ଅବଜ୍ଞା ଲୁକ୍କାୟିତ ଥିବା ସେମାନଙ୍କ ଅଜ୍ଞାତ ନ ଥିଲା । ସେମାନେ ସର୍ବବିଧ ବାହ୍ୟ ସମ୍ମାନସତ୍ତ୍ୱେ ଯବନଦ୍ୱାରା ପ୍ରତିପଦରେ ଅପମାନିତ ହେଉଥିଲେ । ତଥାପି ସେମାନେ ବହୁଦୂରକୁ ଅଗ୍ରସର ହୋଇସାରିଥିଲେଣି । ଦିଲ୍ଲୀଦରବାରର ଉଚ୍ଚପଦର ମାୟା ତ୍ୟାଗକରିବା ସେମାନଙ୍କ ପକ୍ଷରେ ଅସମ୍ଭବ ଥିଲା । ଏଣୁକରି ସେମାନେ ପ୍ରତାପଙ୍କ ମହତ୍ତ୍ୱ ହୃଦୟଙ୍ଗମ କରି ମଧ୍ୟ ତାଙ୍କ ସଙ୍ଗେ ଯୋଗ ଦେଇ ପାରିଲେନାହିଁ ।

ସେମାନେ ଭାବିଥିଲେ ଯେ, ସେମାନଙ୍କ ସାହଚର୍ଯ୍ୟ ନ ପାଇ ପ୍ରତାପ ଯବନ-ବିଦ୍ୱେଷରୁ ବିରତ ହୋଇ ସେମାନଙ୍କ ସହିତ ଦିଲ୍ଲୀ-ଦରବାରରେ ଯୋଗ ଦେବେ । ସ୍ୱୟଂ ଅକବର ମଧ୍ୟ ତାଙ୍କୁ ନାନା ପ୍ରଲୋଭନ ଦେଖାଇବାକୁ ଲାଗିଲେ । ସେ ତାଙ୍କୁ ପାରିଷଦବର୍ଗଙ୍କ ମଧ୍ୟରେ ଅଗ୍ରାସନ ଦେବାକୁ ସ୍ୱୀକୃତ ହୋଇ ତାଙ୍କ ନିକଟକୁ ଅନେକ ପ୍ରସ୍ତାବ ପଠାଇଲେ; କିନ୍ତୁ ସ୍ୱଦେଶପ୍ରାଣ ପ୍ରତାପସିଂହ ଅକବରଙ୍କ ସମସ୍ତ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କଲେ । ସେ ଯବନ ସହିତ ବୈବାହିକ ସମ୍ପର୍କ ରଖିବା ତେଣେ ଥାଉ, ଯବନସଭାକୁ ଯିବାକୁ ମଧ୍ୟ ନାସ୍ତି କଲେ ।

ପ୍ରତାପସିଂହଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ, କେବଳ ଧନଲୋଭରେ ହିଁ ବିଦେଶୀୟ ଶତ୍ରୁଗଣ ସମୃଦ୍ଧିଶାଳୀ ନଗରର ସର୍ବନାଶ ସାଧୁଥାନ୍ତି । ନଗରଗୁଡ଼ିକ ଶ୍ମଶାନରେ ପରିଣତ କଲେ ଆଉ ସେମାନଙ୍କ ଭୟ ରହିବ ନାହିଁ । ଏଣୁ କରି ମେବାଡ଼ର ସମସ୍ତ ପ୍ରଜା ପାର୍ବତ୍ୟ ପ୍ରଦେଶର ଆଶ୍ରୟ ଗ୍ରହଣ କରିବାକୁ ଆଦିଷ୍ଟ ହେଲେ । ସ୍ୱଦେଶର ମଙ୍ଗଳ ନିମନ୍ତେ ଅସ୍ତ୍ର ଧାରଣ କରି ଯେଉଁମାନେ ପର୍ବତର ଆଶ୍ରୟ ନ ନେବେ, ଜନ୍ମଭୂମିରେ ସେମାନଙ୍କ ପ୍ରାଣଦଣ୍ଡ ହେବ, ପ୍ରତାପସିଂହ ରାଜ୍ୟମଧ୍ୟରେ ଏହି ମର୍ମରେ ଗୋଟିଏ ଘୋଷଣାପତ୍ର ପ୍ରଚାରିତ କଲେ । ପ୍ରଜାଗଣ ନିର୍ବିବାଦରେ ରାଣାଙ୍କ ଆଦେଶ ଶିରୋଧାର୍ଯ୍ୟ କରି ଉର୍ବର ଶସ୍ୟକ୍ଷେତ୍ର ପରିତ୍ୟାଗପୂର୍ବକ ପାର୍ବତ୍ୟ ପ୍ରଦେଶର ଆଶ୍ରୟ ଗ୍ରହଣ କଲେ । ସମୃଦ୍ଧ ଜନସ୍ଥାନଗୁଡ଼ିକ ଅଚିରେ ବିଜନ ବିପିନରେ ପରିଣତ ହେଲା ।

ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ରାଜାର ପ୍ରଧାନ କର୍ତ୍ତବ୍ୟ ବୋଲି ପଣ୍ଡିତମାନେ ନିର୍ଦ୍ଦେଶ କରିଅଛନ୍ତି । ପ୍ରତାପସିଂହଙ୍କ ପରି ସ୍ୱଦେଶଭକ୍ତ ରାଜାଙ୍କ ରାଜତ୍ୱସମୟରେ ଏହି ଉନ୍ନତିର ଚରମସୀମା ଆଶା କରିବା ଅସଙ୍ଗତ

ହେବନାହିଁ । ମେବାଡ଼ର ସାମରିକ, ନୈତିକ ଓ ଆଧ୍ୟାତ୍ମିକ ଉନ୍ନତିକଲ୍ପେ ମହାରାଣା ପ୍ରତାପସିଂହ ନିଜର ସମସ୍ତ ଶକ୍ତି ନିୟୋଜିତ କରିଥିଲେ; କିନ୍ତୁ ରାଜ୍ୟର ବୈଷୟିକ ଉନ୍ନତିବିଷୟରେ ସେ ଏକାବେଳକେ ବିମୁଖ ଥିଲେ । ପ୍ରତାପଙ୍କ ଏହି ବିମୁଖତାର ଆଂଶିକ କୈଫିୟତ୍ ଏଥିପୂର୍ବେ ପ୍ରଦତ୍ତ ହୋଇଅଛି । ପ୍ରତାପସିଂହ ମେବାଡ଼ବାସୀମାନଙ୍କ ଅପେକ୍ଷା ମେବାଡ଼ର ଭୂମି ଓ ପର୍ବତକୁ ପ୍ରିୟତର ମଣୁଥିଲେ । ମେବାଡ଼ର ପ୍ରତ୍ୟେକ ଧୂଳିକଣା ତାଙ୍କ ନିକଟରେ ସ୍ୱର୍ଗୀୟ ପବିତ୍ରତାରେ ପୂର୍ଣ୍ଣ ଥିଲା । ମାତୃଭୂମିର ଗରିମାମୟ ଦୃଶ୍ୟରେ ତନ୍ମୟ ହୋଇ, ମାତୃଭକ୍ତିର ଅପୂର୍ବ ଉଚ୍ଛ୍ୱାସରେ ପୁଲକିତ ହୋଇ, ସେ ଦେଶବାସୀଙ୍କୁ ଦାରିଦ୍ର୍ୟ ଗ୍ରହଣ କରିବାକୁ ବାଧ୍ୟ କରିଥିଲେ । ଆଗେ ମେବାଡ଼, ପରେ ପ୍ରଜା । ମେବାଡ଼ ନଥିଲେ ପ୍ରଜାମାନେ ଆସନ୍ତେ କେଉଁଠାରୁ ? ଯେତେଦିନ ପର୍ଯ୍ୟନ୍ତ ବିପକ୍ଷାକ୍ରମଣର ସମ୍ଭାବନା ସମ୍ପୂର୍ଣ୍ଣରୂପେ ତିରୋହିତ ହୋଇନାହିଁ, ସେତେଦିନ ପର୍ଯ୍ୟନ୍ତ ପ୍ରତାପ କିମ୍ବା ତାଙ୍କ ପ୍ରଜାମାନେ ବିଳାସର ସୀମାସୁଦ୍ଧା ସ୍ପର୍ଶ କରିବେ ନାହିଁ । ସ୍ୱଚ୍ଛନ୍ଦ ବନଜାତ ଫଳମୂଳରେ ସନ୍ତୁଷ୍ଟ ରହି ଜୀବନ ଯାପନ କରିବେ ।

ରାଜାଙ୍କ ସମ୍ୟକ୍‌ରୂପେ ପ୍ରତିପାଳିତ ହେଉଅଛି କି ନା, ଏହା ଜାଣିବା ନିମନ୍ତେ ରାଜା ସ୍ୱୟଂ କତିପୟ ପାରିଷଦସମଭିବ୍ୟାହାରରେ ପର୍ବତନିମ୍ନ ପ୍ରଦେଶକୁ ଆସି ତନ୍ନତନ୍ନ କରି ଚତୁର୍ଦ୍ଦିଗ ପରିଦର୍ଶନ କରୁଥିଲେ । ନିଜ ଆଜ୍ଞା ଯଥାଯଥ ପ୍ରତିପାଳିତ ହେଉଥିବାର ଦେଖି ସେ ମନରେ ଅସୀମ ଆନନ୍ଦ ଉପଭୋଗ କରୁଥିଲେ; କିନ୍ତୁ ପରକ୍ଷଣରେ ମେବାଡ଼ର ଦୁର୍ଦ୍ଦଶା ଅବଲୋକନ କରି ତାଙ୍କ ହୃଦୟ ଗଭୀର ବିଷାଦରେ ପୂର୍ଣ୍ଣ ହେଉଥିଲା । ମେବାଡ଼ ପ୍ରତାପସିଂହଙ୍କ ପୂର୍ବପୁରୁଷମାନଙ୍କ ଲୀଳାଭୂମି, ସୁବିଦଗ୍ଧ ପ୍ରଜାଗଣଙ୍କ ଆମୋଦପ୍ରମୋଦର ସ୍ଥାନ । ବିବିଧ ସଙ୍ଗୀତାମୋଦରେ ଏବଂ ନାନାପ୍ରକାର

ଜନକୋଳାହଳରେ ଯେଉଁ ସ୍ଥାନ ନିରନ୍ତର ଜୀବନ୍ତ ବୋଲି ପ୍ରତୀତ ହେଉ-ଥିଲା, ଆଜି ତାହା ନିର୍ବାତ, ନିସ୍ତବ୍ଧ ଓ ନିଷ୍ପ୍ରଭ ! ଯେଉଁ ସୌନ୍ଦର୍ଯ୍ୟପ୍ରଭାବରେ ମେବାଡ଼ ଭାରତବର୍ଷର ପ୍ରଦେଶଗୁଡ଼ିକ ମଧ୍ୟରେ ଶୀର୍ଷସ୍ଥାନ ଅଧିକାର କରି-ଥିଲା; ଆଜି ଆଉ ତାର ସେ ସୌନ୍ଦର୍ଯ୍ୟ ନାହିଁ । ତାହାର ସୌଧରାଜିର ଅଭ୍ୟନ୍ତରରୁ ସୁଶୃଙ୍ଖଳିତ ଅଧିବାସୀଗଣଙ୍କ ହାସ୍ୟ-କୋଳାହଳ ବିକଶିତ ହେଉ-ନାହିଁ । ସେହି ରମ୍ୟ ନିକେତନଗୁଡ଼ିକରେ ବନ୍ୟ ଶ୍ୱାପଦସମୂହ ଅବସ୍ଥାନ କରୁଅଛନ୍ତି । ସେ ସମସ୍ତ ସ୍ଥାନରେ ମନୁଷ୍ୟର ପ୍ରବେଶାଧିକାର ମୁଦ୍ଧା ନାହିଁ ।

ମେବାଡ଼ର ବର୍ତ୍ତମାନ ଏହି ଦଶା । ଥରେ ରାଣା ଏହି ଶ୍ମଶାନ-କ୍ଷେତ୍ରରେ ବିଚରଣ କରୁଥିବା ସମୟରେ ଦେଖିଲେ ଯେ, ଜଣେ ମେଷ-ପାଳକ ତାଙ୍କ ଆଦେଶ ଅମାନ୍ୟ କରି ନଦୀ-ସଲିଳ-ବିଧୌତ ପ୍ରଶସ୍ତ ସମତଳ କ୍ଷେତ୍ରରେ ନିଃଶଙ୍କ ଚିତ୍ତରେ ମେଷଗୁଡ଼ିକୁ ଚରାଉଅଛି । ପ୍ରତାପ-ସିଂହ ତାକୁ କେତେଗୁଡ଼ିଏ ପ୍ରଶ୍ନ ପଚାରିଲେ; କିନ୍ତୁ ମେଷପାଳକ କୌଣସି ପ୍ରଶ୍ନର ସନ୍ତୋଷଜନକ ଉତ୍ତର ଦେଇପାରିଲା ନାହିଁ । ପ୍ରତାପ ଦୟାର ସାଗର ହୋଇ ସୁଦ୍ଧା ନିତାନ୍ତ ବିଷାଦସନ୍ତପ୍ତ ହୃଦୟରେ ଅବାଧ ମେଷପାଳକର ପ୍ରାଣଦଣ୍ଡାଜ୍ଞା ଦେଲେ । ଆହୁରି ମଧ୍ୟ ଆଜ୍ଞା ଦେଲେ ଯେ, ତତ୍ସମ ଅପରାଧୀ ରାଜଦ୍ରୋହୀମାନଙ୍କ ଶିକ୍ଷା-ପ୍ରଦାନାର୍ଥେ ମେଷପାଳକର ମୃତ ଦେହ ପ୍ରକାଶ୍ୟ ପ୍ରାନ୍ତରରେ ବିଲମ୍ବିତ ହେବ । ରାଜାଙ୍କର ଏତାଦୃଶ କଠୋରତାହେତୁରୁ ରାଜସ୍ଥାନର ଭୂସ୍ୱର୍ଗକାନନସଦୃଶ ଉର୍ବର ଭୂଭାଗ ଅଚିରେ ମହାଶ୍ମଶାନରେ ପରିଣତ ହୋଇଗଲା ।

ଯେଉଁ ସମୟର ବିଷୟ ବର୍ଣ୍ଣିତ ହେଉଅଛି, ସେହି ସମୟରେ ୟୁରୋପ ସହିତ ଭାରତବର୍ଷ ବାଣିଜ୍ୟ-ସୂତ୍ରରେ ଆବଦ୍ଧ ଥିଲା । ସୁରତର

ପଣ୍ୟ-ଦ୍ରବ୍ୟସମୃଦ୍ଧ ସୌରାଷ୍ଟ୍ର ଓ ଅପରାପର ବନ୍ଦରରୁ ମେବାଡ଼ର ମଧ୍ୟ ଦେଇ ଭାରତମହାସାଗରର ଉପକୂଳକୁ ନୀତ ହେଉଥିଲା । ପ୍ରତାପ-ସିଂହଙ୍କ ପ୍ରତାପଶାଳୀ ଅନୁଚରବର୍ଗ ବିଜନ ପର୍ବତାବାସରୁ ଅବତରଣ କରି ସେହି ବାଣିଜ୍ୟ-ସାମଗ୍ରୀଗୁଡ଼ିକୁ ବଳପୂର୍ବକ ଲୁଣ୍ଠି ନେଉଥିଲେ । ଯୁଦ୍ଧର ବ୍ୟୟନିର୍ବାହୋପଯୋଗୀ ଅର୍ଥସଂଗ୍ରହନିମନ୍ତେ, ବୋଧହୁଏ, ଏହି ଗର୍ହିତ ଉପାୟ ଅବଲମ୍ବିତ ହୋଇଥିଲା ।

ପ୍ରତାପସିଂହଙ୍କ ସମସ୍ତ ଆୟୋଜନଗୁଡ଼ିକ ସମ୍ରାଟ ଅକବରଙ୍କ ତୀକ୍ଷ୍ଣ ଦୃଷ୍ଟିକୁ ଏଡ଼ି ପାରିନଥିଲା; କିନ୍ତୁ ସେ ଏସବୁ ଜାଣି ସୁଦ୍ଧା ପ୍ରକାଶ୍ୟରେ ଅନଭିଜ୍ଞତାର ଛଳନା କରୁଥିଲେ । ସେ ଜାଣିଥିଲେ ଯେ, ହିନ୍ଦୁମାନେ ସମସ୍ତେ ପ୍ରକାଶ୍ୟଭାବରେ ପ୍ରତାପଙ୍କ ସହିତ ଯୋଗଦାନ ନ କଲେ ସୁଦ୍ଧା କେହି ତାଙ୍କ ମତର ବିରୋଧୀ ନୁହନ୍ତି । ପ୍ରତାପଙ୍କ କେଶାଗ୍ରର ଅପମାନ ହେଲେ ସମସ୍ତ ହିନ୍ଦୁଜାତି ଅପମାନିତ ହେବ । ଏଣୁକରି ସେ ପ୍ରତାପଙ୍କ କୌଣସି କାର୍ଯ୍ୟର ପ୍ରତିବାଦ କରିବାକୁ ସାହସୀ ହୋଇନଥିଲେ । କିନ୍ତୁ ତାଙ୍କର ସମ୍ପୂର୍ଣ୍ଣ ବିଶ୍ୱାସ ଥିଲା ଯେ, ମେବାଡ଼ ଆକ୍ରମଣ କରିବାକୁ ତାଙ୍କୁ ନିଶ୍ଚୟ ଦିନେ ସୁଯୋଗ ମିଳିବ । ଅକବର ସତୃଷ୍ଣନୟନରେ ଏହି ସୁଯୋଗର ପ୍ରତୀକ୍ଷାରେ ରହିଲେ ।



# ଚତୁର୍ଥ ପରିଚ୍ଛେଦ

## ହର୍ଷେ ବିଷାଦ

ସ୍ୱାଧୀନତା-ରାଣୀଙ୍କ ରହସ୍ୟ-ଜାଲ ଭେଦ କରିବା ସହଜ ନୁହେ । ସେ ମନୁଷ୍ୟର ଐହିକ ବାସନାର ଶୀର୍ଷସ୍ଥାନ ଅଧିକାର କଲେ ସୁଦ୍ଧା ସହଜରେ ଧରା ଦିଅନ୍ତି ନାହିଁ । ତାଙ୍କ ସହଚରୀଗୁଡ଼ିକ ମଧ୍ୟ ତାଙ୍କ ପରି ରହସ୍ୟମୟୀ । ପ୍ରଥମେ ସେମାନଙ୍କୁ ସନ୍ତୁଷ୍ଟ କରି ନ ପାରିଲେ ସ୍ୱାଧୀନତା-ରାଣୀଙ୍କ ବରଣମାଳା ମାନବର ଗ୍ରୀବାଦେଶରେ ଲମ୍ବିତ ହୁଏ ନାହିଁ । କର୍ତ୍ତବ୍ୟନିଷ୍ଠା ଏହି ସହଚରୀମାନଙ୍କ ପୁରୋଗାମିନୀ । ସ୍ୱାଧୀନ ମାନବ ଯଦି ଏହି କର୍ତ୍ତବ୍ୟନିଷ୍ଠା, ଭକ୍ତି, ପ୍ରୀତି, ଦୟା ପ୍ରଭୃତିଙ୍କୁ ପଦଦଳିତ କରି ବିଳାସିତାର ଆଶ୍ରୟ ଗ୍ରହଣ କରେ, ତାହାହେଲେ ସ୍ୱାଧୀନତା-ରାଣୀ ତାହା ପ୍ରତି ଶୀଘ୍ର ବିମୁଖ ହୋଇଯାନ୍ତି । ପରାଧୀନ ମାନବ ଯଦି ବିଳାସିତା ଓ ସ୍ୱାର୍ଥପରାୟଣତାର କୁସୁମକୋମଳ ମାର୍ଗ ପରିତ୍ୟାଗ କରି କର୍ତ୍ତବ୍ୟନିଷ୍ଠା ପ୍ରଭୃତିର କଣ୍ଟକାକୀର୍ଣ୍ଣ ପଥର ପଥିକ ହୁଏ, ତାହାହେଲେ ତାହାର ସ୍ୱାଧୀନତାଲାଭ ସୁଗମ ହୁଏ; କିନ୍ତୁ କାମନାସିଦ୍ଧି ପୂର୍ବେ ସେ ଜୀବନରେ ଅନେକ ଥର ବିଫଳମନୋରଥ ହୋଇ ନୈରାଶ୍ୟର ଗଭୀରତମ କୂପରେ ନିକ୍ଷିପ୍ତ ହୋଇଥାଏ । ଯଦି ଏହି ପ୍ରତିକୂଳ ଅବସ୍ଥାଗୁଡ଼ିକରେ ସେ ହୃଦୟକୁ ଅଚଳ ଓ ଅଟଳ ରଖି କର୍ତ୍ତବ୍ୟପଥରୁ ବିରତ ହୁଏ ନାହିଁ, ତାହାହେଲେ ସ୍ୱାଧୀନତା-ରାଣୀ ହସି ହସି ତାହା ନିକଟକୁ ଆସି ତାକୁ ସାଦରେ ଗ୍ରହଣ କରନ୍ତି ।

ରାଣା ପ୍ରତାପସିଂହ ଜାଣି ଶୁଣି କର୍ତ୍ତବ୍ୟର କଣ୍ଟକାକୀର୍ଣ୍ଣ ପଥ ବାଛି ନେଇଥିଲେ । ହିନ୍ଦୁସ୍ଥାନର ଅନ୍ୟାନ୍ୟ ରାଜ୍ୟର ଲୋକେ ତାଙ୍କ ସହିତ ଯୋଗ ଦେବା ଦୂରେ ଥାଉ, ଅନେକେ ପ୍ରତ୍ୟକ୍ଷ ଭାବରେ ମୋଗଲର ପକ୍ଷ ଅବଲମ୍ବନ କରିଥିଲେ । ରାଣା ଏଥିରେ ଭ୍ରୂକ୍ଷେପ ନକରି କେବଳ ମେବାଡ଼ ଉପରେ ହିଁ ନିର୍ଭର କରି ରହିଲେ । ପରିଶେଷରେ ଏହି ମେବାଡ଼ରେ ମଧ୍ୟ କେହି କେହି ତାଙ୍କ ପ୍ରତି ପ୍ରତିକୂଳାଚରଣ କରିବାକୁ ଆରମ୍ଭ କଲେ । ରାଣାଙ୍କ ଭ୍ରାତା ଶକ୍ତିସିଂହ ଏହି ବିଦ୍ରୋହୀମାନଙ୍କ ମଧ୍ୟରେ ଅନ୍ୟତମ ।

ରାଣା ଉଦୟସିଂହଙ୍କ ଚତୁର୍ବିଂଶତି ପୁତ୍ରମଧ୍ୟରେ ଶକ୍ତିସିଂହ ଦ୍ୱିତୀୟ ଥିଲେ । ତାଙ୍କ କୋଷ୍ଠୀପତ୍ରିକା ଲେଖିବା ସମୟରେ ଦୈବଜ୍ଞ ଗଣନା କରି ଜାଣିପାରିଥିଲେ ଯେ, ଶକ୍ତିସିଂହ ମେବାଡ଼ର କଳଙ୍କସ୍ୱରୂପ ହେବେ । ଦୈବଜ୍ଞଙ୍କ ମୁଖରୁ ଏ କଥା ଶୁଣି ପୁତ୍ର ପ୍ରତି ଉଦୟସିଂହଙ୍କ ଘୃଣା ଜାତ ହେଲା । କିନ୍ତୁ କରିବେ କଣ ? ନିଜ ପୁତ୍ରକୁ ସହଜରେ କିପରି ପିଙ୍ଗିଦେବେ ? ଏଣୁକରି ଅନିଚ୍ଛାସତ୍ତ୍ୱେ ସେ ଶକ୍ତିସିଂହଙ୍କୁ ନିଜ ପରିବାରରେ ରଖିବାକୁ ବାଧ୍ୟ ହୋଇଥିଲେ ।

ଦିନେ କୁମାର ଶକ୍ତିସିଂହ ପିତାଙ୍କ ନିକଟରେ ବସି କ୍ରୀଡ଼ା କରୁଥିଲେ, ଏମନ୍ତ ସମୟରେ ଜଣେ ଅସ୍ତ୍ରକାର ଗୋଟିଏ ନୂତନ ଛୁରିକା ଆଣି ରାଣାଙ୍କ ସମ୍ମୁଖରେ ଉପସ୍ଥିତ ହେଲା । ଛୁରିକାର ଧାର ପରୀକ୍ଷା କରିବାକୁ ରାଣା ଆଦେଶ ଦିଅନ୍ତେ କୁମାର ଶକ୍ତିସିଂହ ଅସ୍ତ୍ରକାରହସ୍ତରୁ ଛୁରିକାଖଣ୍ଡିକ ଛଡ଼ାଇ ନେଇ ପିତାଙ୍କୁ ସମ୍ବୋଧନ କରି କହିଲେ, "ପିତଃ ଏ ଛୁରିକାଦ୍ୱାରା କଣ ଅସ୍ଥିମାଂସ କଟାଯାଇନପାରେ ?" ଏହା କହି ସେ ତତ୍କ୍ଷଣାତ୍ ଉକ୍ତ ଛୁରିକାକୁ ନିଜ କୁସୁମକୋମଳ ହସ୍ତୋପରି ସ୍ଥାପିତ କଲେ । ସଙ୍ଗେ ସଙ୍ଗେ ହସ୍ତରୁ ପ୍ରବଳବେଗରେ ରକ୍ତଧାରା ବହିବାକୁ ଲାଗିଲା । ଏତଦ୍ଦର୍ଶନରେ ରାଣା କୋପାବିଷ୍ଟ ହୋଇ ତଦଣ୍ଡରେ ପୁତ୍ରର ଶିରଚ୍ଛେଦର ଆଦେଶ ଦେଲେ ।

ବାଳକ ଶକ୍ତିସିଂହ ବଧଭୂମିକୁ ନୀତ ହେଲେ । ଘାତକଗଣ ତାଙ୍କ ଶିରଚ୍ଛେଦନନିମନ୍ତେ କୃତାୟୋଜନ ହୋଇ ତରବାରି-ହସ୍ତରେ ଛିଡ଼ା ହେଲେ । ରାଣା ଉଦୟସିଂହ ଅଟଳଭାବରେ ଶକ୍ତିସିଂହଙ୍କ ନିକଟରେ ଦଣ୍ଡାୟମାନ । ଦର୍ଶକଗଣ କ୍ଷୋଭ ଓ ଦୁଃଖରେ ଅବିରଳ ଅଶ୍ରୁଧାରା ବିସର୍ଜନ କରୁଅଛନ୍ତି । କାହାରି ମୁଖରୁ କଥାପଦେ ସୁଦ୍ଧା ବାହାରୁ ନାହିଁ । ରାଣାଙ୍କୁ ଏ କାର୍ଯ୍ୟରୁ ନିବୃତ୍ତ କରିବାପାଇଁ କାହାରି ସାହସ ହେଉନାହିଁ । ଅସହ୍ୟ ନୀରବତା ଓ ନିଶ୍ଚେଷ୍ଟତାର ଗୁରୁ ଆଘାତରେ ସମସ୍ତେ ଅବସନ୍ନ । କ୍ରମେ ଏ ନୀରବତା ରାଣା ଉଦୟସିଂହଙ୍କ ପକ୍ଷରେ ମଧ୍ୟ ଅସହ୍ୟ ହେଲା । କାର୍ଯ୍ୟାରମ୍ଭ କରିବା ନିମନ୍ତେ ସେ ଘାତକମାନଙ୍କୁ ଆଦେଶ ଦେବାକୁ ଯାଉଅଛନ୍ତି, ଏମନ୍ତ ସମୟରେ ସାଲୁମ୍ବ୍ରା-ସର୍ଦ୍ଦାର ଚନ୍ଦାବତ୍ କୃଷ୍ଣ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କୃତାଞ୍ଜଳିପୁଟରେ ନିବେଦନ କଲେ, "ମହାରାଜ, ଏହି ପଦାଶ୍ରିତର ଗୋଟିଏ ନିବେଦନ ଅଛି । ଅନେକ ସମୟରେ 'ମୋ' ଉପରେ ସନ୍ତୁଷ୍ଟ ହୋଇ ଆପଣ ବର ଦେବାକୁ ଅଭିଳାଷ ପ୍ରକାଶ କରିଅଛନ୍ତି; କିନ୍ତୁ ମୁଁ କୌଣସି ବର ପ୍ରାର୍ଥନା କରିନାହିଁ । ବର୍ତ୍ତମାନ ପ୍ରକୃଷ୍ଟ ସମୟ ଉପସ୍ଥିତ ହୋଇଅଛି । ଯଦି ଦାସପ୍ରତି ଛାମୁଙ୍କ ଅନୁଗ୍ରହ ଥାଏ, ତାହାହେଲେ ବରପ୍ରାର୍ଥନା କରି-ବାକୁ ଅନୁଜ୍ଞା ଦେଲେ କୃତାର୍ଥ ହୁଅନ୍ତି ।" ରାଣା ତାଙ୍କ ଅଭୀଷ୍ଟ ପୂର୍ଣ୍ଣ କରି-ବାକୁ ସ୍ୱୀକୃତ ହୁଅନ୍ତେ ସର୍ଦ୍ଦାର-ଚୂଡ଼ାମଣି ଆଶାନ୍ୱିତହୃଦୟରେ ନିବେଦନ କଲେ, "ମହାରାଜ ! ଛାମୁଙ୍କ ପ୍ରସାଦରୁ ମୋର ଧନର କୌଣସି ଅଭାବ ନାହିଁ । ଉଚ୍ଚ ପଦ କିମ୍ବା ମାନସମ୍ଭ୍ରମ ମୁଁ ଚାହେଁନା । ମୁଁ ଅପୁତ୍ରକ—କୁଳପ୍ରଦୀପ ଅଭାବରେ ମୋର ମରଣାନ୍ତେ ମୋର ବଂଶ ନିବିଡ଼ ଅନ୍ଧକାରରେ ସମାଚ୍ଛନ୍ନ ହେବ । ଏଣୁକରି ରାଜକୁମାରଙ୍କୁ ଧର୍ମପୁତ୍ରରୂପେ ଗ୍ରହଣ କରି ଚନ୍ଦାବତ୍-ଗୋଷ୍ଠୀର ରକ୍ଷାବିଧାନ କରିବାକୁ ଅଭିଳାଷ କରିଅଛି । ରାଜ

ପୁତ୍ରଙ୍କ ଦଣ୍ଡାଜ୍ଞା ରହିତ କରି ମୋର କାମନା ପୂର୍ଣ୍ଣ କରନ୍ତୁ, ଏହାହିଁ ମୋର ଏକମାତ୍ର ପ୍ରାର୍ଥନା । ଅନ୍ୟ କୌଣସି ବରରେ ମୋର ଅଭିଳାଷ ନାହିଁ ।"

ଚନ୍ଦାବତ୍ କୃଷ୍ଣଙ୍କ ଅଭିଳାଷ ସିଦ୍ଧ ହେଲା । ଶକ୍ତସିଂହଙ୍କ ପ୍ରାଣଦଣ୍ଡାଜ୍ଞା ରହିତ ହେଲା । ସାଲୁମ୍ବ୍ରାଧିପତି କୁମାରଙ୍କୁ ଧର୍ମପୁତ୍ରରୂପେ ଗ୍ରହଣ କରି ନିଜ ଗୃହକୁ ଗମନ କଲେ । ଦର୍ଶକମାନଙ୍କ ହୃଦୟରୁ ଦୁଃଖର ଭାର ଅପସାରିତ ହେଲା । ସମସ୍ତେ ସନ୍ତୁଷ୍ଟଚିତ୍ତରେ ନିଜ ନିଜ ଗୃହକୁ ପ୍ରତ୍ୟାବୃତ୍ତ ହେଲେ ।

ଶକ୍ତସିଂହ ଚନ୍ଦାବତ୍ କୃଷ୍ଣଙ୍କ ଗୃହରେ ଅବସ୍ଥାନ କରିବାକୁ ଲାଗିଲେ । କିଛିକାଳପରେ ବୃଦ୍ଧ ବୟସରେ ସାଲୁମ୍ବ୍ରା-ସର୍ଦ୍ଦାରଙ୍କ ପୁତ୍ରକନ୍ୟା ଜାତ ହେଲେ । ଦତ୍ତକପୁତ୍ର ଶକ୍ତସିଂହ ତାଙ୍କ ଉତ୍ତରାଧିକାରିତ୍ୱରୁ ବଞ୍ଚିତ ହେଲେ । ବୃଦ୍ଧ ସର୍ଦ୍ଦାର ବିଷମ ସଙ୍କଟରେ ପଡ଼ିଲେ । ଶକ୍ତସିଂହଙ୍କ ଭବିଷ୍ୟନ୍ମଙ୍ଗଳ ନିମନ୍ତେ ସେ କଣ କରିବେ ଯେ କିଛି ଠିକ୍ କରିପାରିଲେନାହିଁ ।

ଇତିମଧ୍ୟରେ ରାଣା ଉଦୟସିଂହଙ୍କ ମୃତ୍ୟୁ ହେବାରୁ ପ୍ରତାପସିଂହ ମେବାଡ଼ର ସିଂହାସନରେ ଅଭିଷିକ୍ତ ହେଲେ । ଶକ୍ତସିଂହଙ୍କ ପୁନର୍ଲାଭ ନିମନ୍ତେ ତାଙ୍କ ହୃଦୟ ବ୍ୟାକୁଳ ହେବାକୁ ଲାଗିଲା । ଉଦୟସିଂହ ଶକ୍ତସିଂହଙ୍କ ଉଦୟପୁରବାସସ୍ଥାନର ବିରୋଧୀ ଥିଲେ । ସେ ତ ବର୍ତ୍ତମାନ ସ୍ୱର୍ଗରେ । ପ୍ରତାପସିଂହ ଭାଇଙ୍କି ଘରକୁ ଫେରି ଆସିଲେ ଭଲ ହୁଅନ୍ତା ନାହିଁ କି ? ଉଦୟସିଂହ ଶକ୍ତସିଂହଙ୍କୁ ନିର୍ବାସିତ କରିନଥିଲେ—ଦତ୍ତକ ପୁତ୍ରରୂପେ ଚନ୍ଦାବତ୍ କୃଷ୍ଣଙ୍କ ହସ୍ତରେ ସମର୍ପଣ କରିଥିଲେ । ଶକ୍ତସିଂହଙ୍କୁ ଉଦୟପୁରକୁ ଫେରିବାଦ୍ୱାରା ନିର୍ବାସିତର ପୁନରାହ୍ୱାନ ହେବନାହିଁ । ବିଶେଷତଃ ଚନ୍ଦାବତ୍ କୃଷ୍ଣଙ୍କ ପୁତ୍ରକନ୍ୟା ଜାତ ହୋଇଥିବାରୁ ଶକ୍ତସିଂହ ତାଙ୍କ ଉତ୍ତରାଧିକାରିତ୍ୱରୁ ବଞ୍ଚିତ ହୋଇଅଛନ୍ତି । ଅସହାୟ ରାଜକୁମାରଙ୍କୁ

ଭବିଷ୍ୟତ୍ ଘୋର ଅନ୍ଧକାରରେ ସମାଚ୍ଛନ୍ନ ହୋଇଅଛି । ନିରାଶ୍ରୟକୁ ଆଶ୍ରୟ-ଦାନ କରିବା ରାଜାର ପ୍ରଧାନ କାର୍ଯ୍ୟ । ପ୍ରତାପସିଂହ କଣ ଏହି ରାଜଧର୍ମ ପରିହାର କରିବେ? ପୁଣି ଶକ୍ତସିଂହଙ୍କ ବୀର୍ଯ୍ୟ ଓ ଶୌର୍ଯ୍ୟ ଅଲୋକସାମାନ୍ୟ । ଯବନବିଗ୍ରହରେ ସେ ବୀରଭ୍ରାତାର ଅବଶ୍ୟକତା ଅତି ବେଶି । ପ୍ରତାପସିଂହ ଏପରି ସୁଯୋଗ ଛାଡ଼ିବେ କି ? ଶକ୍ତସିଂହ ମେବାଡ଼ ବିରୁଦ୍ଧରେ କୌଣସି ଅପରାଧ କରିନାହାନ୍ତି । ତେବେ ରାଣାଙ୍କ ଭାଇ ରାଣାଙ୍କ ପାଖରେ ନ ରହି ଅନ୍ୟତ୍ର ରହିବେ କାହିଁକି ? ପ୍ରତାପସିଂହ ଶୀଘ୍ର ସାଲୁମ୍ବ୍ରା-ସର୍ଦ୍ଦାରଙ୍କ ନିକ-ଟକୁ ଦୂତ ପଠାଇ ଅନୁଜ ଶକ୍ତସିଂହଙ୍କୁ ଉଦୟପୁରକୁ ଘେନିଆସିଲେ ।

ଭାଇ ସହିତ ଭାଇର ମିଳନ ହେଲା । ସେ ମିଳନର ତୁଳନା ଜଗତରେ ବିରଳ; କିନ୍ତୁ ଭଗବାନଙ୍କ ରାଜ୍ୟରେ ଚିରସ୍ଥାୟୀ ସୁଖର ସ୍ଥାନ ନାହିଁ । ଅତି ସାମାନ୍ୟ କାରଣରେ ସେମାନଙ୍କ ମଧ୍ୟରେ ଶୀଘ୍ର ଘୋର ମନୋମାଳିନ୍ୟ ଜାତ ହେଲା ।

ଦିନେ ପ୍ରତାପସିଂହ ଓ ଶକ୍ତସିଂହ ମୃଗୟାନିମନ୍ତେ ଅରଣ୍ୟରେ ପ୍ରବିଷ୍ଟ ହେଲେ । ଗୋଟିଏ ଲକ୍ଷ୍ୟ ସମ୍ବନ୍ଧରେ ଦୁଇ ଭାଇ ମଧ୍ୟରେ ଘୋର-ତର ବାକ୍‌ଯୁଦ୍ଧ ଉପସ୍ଥିତ ହେଲା । ବାଦାନୁବାଦ କରୁଁ କରୁଁ ଉଭୟେ କ୍ରମେ କ୍ରୋଧାନ୍ଧ ହୋଇଗଲେ । ରାଣା ପ୍ରତାପସିଂହ ଶକ୍ତସିଂହଙ୍କ ପ୍ରତି ତୀବ୍ର କଟାକ୍ଷପାତ କରି କହିଲେ, "ଆସ, ପରୀକ୍ଷା କରାଯାଉ, କାହାର ଲକ୍ଷ୍ୟ ଅବ୍ୟର୍ଥ ।" ସମଧିକ ଗର୍ବିତ ସ୍ୱରରେ ଶକ୍ତସିଂହ ଉତ୍ତର କଲେ, "ଆସ, ତାହାହିଁ ହେଉ ।"

ଶକ୍ତସିଂହଙ୍କ ମୁଖରୁ ବାକ୍ୟ ଶେଷ ନ ହେଉଣୁ ଉଭୟ ଭ୍ରାତା ପରସ୍ପର ବିପରୀତ ଦିଗରେ ବର୍ଚ୍ଛା ଉତ୍ତୋଳନପୂର୍ବକ ଦଣ୍ଡାୟମାନ ହେଲେ

ଉଭୟଙ୍କ ନୟନପ୍ରାନ୍ତରୁ କୋଧାଗ୍ନି-ସ୍ଫୁଲିଙ୍ଗ ନିର୍ଗତ ହେବାକୁ ଲାଗିଲା । ଅଦୂରରେ ଶିଶୋଦୀୟବଂଶୀୟ କୁଳପୁରୋହିତ ଦଣ୍ଡାୟମାନ ହୋଇ ଏ ଭୀଷଣ ଦୃଶ୍ୟ ଦେଖୁଥିଲେ । ତାହାଙ୍କର ବୁଝିବାକୁ ଆଉ ବାକି ରହିଲା ନାହିଁ ଯେ, କ୍ଷଣକାଳ ବିଳମ୍ବ ହେଲେ ଦୁଇଗୋଟି ପବିତ୍ର ଜୀବନର ବିନାଶ ସଙ୍ଗେ ସଙ୍ଗେ ମେବାଡ଼ଭାଗ୍ୟାକାଶ ଦୁଃଖ-ଅନ୍ଧକାରର ଗାଢ଼ ମେଘମାନରେ ଆଚ୍ଛନ୍ନ ହେବ । ସ୍ୱଦେଶପ୍ରାଣ ରାଜଭକ୍ତ ବ୍ରାହ୍ମଣଶ୍ରେଷ୍ଠ ଆଉ ଭୂନି ହୋଇ ରହି-ପାରିଲେ ନାହିଁ । ବିଦ୍ୟୁଦ୍‌ବେଗରେ ଘଟନା-ସ୍ଥଳରେ ଉପସ୍ଥିତ ହୋଇ ଭ୍ରାତୃଦ୍ୱୟଙ୍କ ମଧ୍ୟସ୍ଥଳରେ ଛିଡ଼ା ହେଲେ । ପୁରୋହିତଙ୍କ ଆଗମନର ଉଦ୍ଦେଶ୍ୟ ବୁଝିପାରି ପ୍ରତାପ ସ୍ୱୀୟ ଉତ୍ତୋଳିତ ବର୍ଚ୍ଛାକୁ ଅବନମିତ କଲେ; କିନ୍ତୁ ଶକ୍ତସିଂହ ଅବିଚଳିତ ହୃଦୟରେ ଅସ୍ତ୍ରକ୍ଷେପଣ କରିବାକୁ ଉଦ୍ୟତ ହୁଅନ୍ତେ ବିପ୍ରବର ସ୍ୱୀୟ ହୃଦୟକୁ ଛୁରିକାବିଦ୍ଧ କରି ଇହଲୀଳା ସାଙ୍ଗ-କଲେ । ପ୍ରତାପଙ୍କ ଦୃଷ୍ଟିପଥରୁ ମୋହ-କୁଜ୍‌ଝଟିକା ସମ୍ପୂର୍ଣ୍ଣରୂପେ ଅପ-ସାରିତ ହେଲା । ସେ ଶକ୍ତସିଂହଙ୍କୁ ବ୍ରହ୍ମହତ୍ୟାର ଏକମାତ୍ର କାରଣ ଭାବି ସ୍ୱୀୟ ରାଜ୍ୟରୁ ନିର୍ବାସିତ କଲେ ।

ରାଜପୁରୋହିତଙ୍କ ପ୍ରେତକ୍ରିୟାସଂପାଦନ ନିମନ୍ତେ ରାଜକୋଷରୁ ଅଜସ୍ର ଧନ ବ୍ୟୟିତ ହେଲେ ସୁଦ୍ଧା ପ୍ରତାପସିଂହଙ୍କ ମନରେ ତୃପ୍ତି ଜାତ ହୋଇପାରିଲା ନାହିଁ । ସେ ଜୀବନରେ ଅନେକଥର ଏହି ଘଟନା ସ୍ମରଣ କରି ଦାରୁଣ ଶୋକରେ ଅଧୀର ହୋଇଥିଲେ; କିନ୍ତୁ ଉଦ୍ଧତ ଶକ୍ତସିଂହ ଭ୍ରାତୃନିକଟରୁ ବିଦାୟ ଗ୍ରହଣକରି ପ୍ରତିହିଂସା ସାଧନ କରିବାକୁ ଦୃଢ଼ସଙ୍କଳ୍ପ ହେଲେ । ନାନାବିଧ ଭାବନାର ଘାତପ୍ରତିଘାତରେ ତାଙ୍କ ହୃଦୟ ଆନ୍ଦୋଳିତ ହେବାକୁ ଲାଗିଲା । ପ୍ରତାପସିଂହ ଜ୍ୟେଷ୍ଠ ହେଲେ ସୁଦ୍ଧା ଶକ୍ତସିଂହ ତାଙ୍କ ଶ୍ରେଷ୍ଠତ୍ୱ ସ୍ୱୀକାର କରିବାକୁ ଅନିଚ୍ଛୁକ ହେଲେ । ମେବାଡ଼-ସିଂହାସନରେ, କନିଷ୍ଠ ଶକ୍ତ-

ସିଂହଙ୍କର ଦାବି ନାହିଁ ବୋଲି କିଏ କହିପାରେ ? ତେବେ ପ୍ରତାପ କେଉଁ ଯୁକ୍ତି ବଳରେ ତାଙ୍କଠାରୁ ବଡ଼ ବିବେଚିତ ହେଲେ ? କେବଳ ବଡ଼ ହୋଇଥିଲେ ଶକ୍ତ ସିଂହଙ୍କର କୌଣସି ଅପରାଧ ନ ଥିଲା । ସେ ମେବାଡ଼ର ସିଂହାସନରେ ବସିବାକୁ ଅଭିଳାଷୀ ନୁହନ୍ତି । କିନ୍ତୁ ମନୁଷ୍ୟ-ପରି ସ୍ୱାଧୀନଭାବରେ କାଳଯାପନ କରିବାକୁ ତାଙ୍କ ଅଧିକାର ଅଛି ତ ? ପ୍ରତାପସିଂହ କଣ ତାଙ୍କୁ ସେ ଅଧିକାରରୁ ବଞ୍ଚିତ କରିନାହାନ୍ତି ? କେବଳ ବଞ୍ଚିତ କରିଅଛନ୍ତି କି ? ସାମାନ୍ୟ କୁକ୍କୁର ବିଡ଼ାଲସଦୃଶ ତାଙ୍କୁ ମେବାଡ଼ରୁ ବିତାଡ଼ିତ କରିଅଛନ୍ତି । ଏଥିର ପ୍ରତିଶୋଧ ନ ନେଇ ତୁନି ରହିବା ଶକ୍ତସିଂହଙ୍କ ପରି ଗର୍ବାନ୍ଧ ଯୁବକଙ୍କ ପକ୍ଷରେ ଅସମ୍ଭବ ଥିଲା । କିନ୍ତୁ ସେ ଏକାକୀ ପ୍ରତାପଙ୍କର କୌଣସି କ୍ଷତି କରି ପାରିବେ ନାହିଁ । ତେବେ ଯଦି ଅକବରଙ୍କ ସହିତ ମିଳିତ ହୁଅନ୍ତି,— ଶକ୍ତସିଂହ ଆଉ ଭାବିପାରିଲେ ନାହିଁ । ତାଙ୍କ ମସ୍ତିଷ୍କରେ ଭୀଷଣ ଅଗ୍ନ୍ୟୁତ୍ପାତର ପ୍ରକ୍ରିୟା ସାଧିତ ହେବାକୁ ଲାଗିଲା । କ୍ଷଣକାଳ ଦୋଳାଚଳ-ଚିତ୍ତବୃତ୍ତି ରହି ସେ ପରିଶେଷରେ ଅକବରଙ୍କ ସାହାଯ୍ୟ ଲୋଡ଼ିବାକୁ ନିଶ୍ଚୟ କଲେ । ପ୍ରତାପଙ୍କ ପିତୃବ୍ୟ ସଗରସିଂହ ଅନେକ ଦିନରୁ ମୋଗଲର ପ୍ରସାଦାର୍ଥୀ ହୋଇ ସାରିଥିଲେଣି । ଶକ୍ତସିଂହ ଅଧୁନା ତାଙ୍କରି ପଦାଙ୍କାନୁସରଣ କରିବାକୁ ନିଶ୍ଚୟ କରି ଦିଲ୍ଲୀ-ଦରବାରରେ ଉପସ୍ଥିତ ହେଲେ । ଏହା ଅବଶ୍ୟ ମେବାଡ଼ ପକ୍ଷରେ ଗୋଟିଏ ଭୀଷଣ ଦୁଃସମ୍ବାଦ ଥିଲା; କିନ୍ତୁ ପ୍ରତାପସିଂହ ଏଥିରେ ଅଣୁମାତ୍ର ବିଚଳିତ ହେଲେନାହିଁ । ସମଗ୍ର ପୃଥିବୀ ତାଙ୍କୁ ତ୍ୟାଗ କଲେସୁଦ୍ଧା ସେ କର୍ତ୍ତବ୍ୟପଥ ତ୍ୟାଗ କରିବେ ନାହିଁ । ଯବନ-ନିପାତ-କାର୍ଯ୍ୟରେ ସେ କଦାପି ନିରାଶ ବା ଭଗ୍ନୋତ୍ସାହ ହେବେ ନାହିଁ । ଏହାହିଁ ପ୍ରକୃତ ପୁରୁଷାର୍ଥ । ଏହି ପୁରୁଷାର୍ଥ ଆଗରେ ଶତ୍ରୁର ଶତସହସ୍ର ତୋପ ତୁଚ୍ଛ ଅଟେ !

---

ପଞ୍ଚମ ପରିଚ୍ଛେଦ

# ବିବାଦର ସୂତ୍ରପାତ



ଅମ୍ବର୍ଗଡ଼ର ରାଜା ମାନସିଂହ ଅକବରଙ୍କ ଦରବାରର ସର୍ବଶ୍ରେଷ୍ଠ ମନ୍ତ୍ରୀ ଥିଲେ । ତାଙ୍କ ପିତୃସ୍ୱସାଙ୍କ ସଙ୍ଗରେ ଅକବରଙ୍କ ପରିଣୟ ସମ୍ପନ୍ନ ହୋଇଥିଲା । ସେ ଯେ କେବଳ ସମ୍ରାଟଙ୍କ ଶାଳକ-ପୁତ୍ର ଥିଲେ, ଏମନ୍ତ ନୁହେଁ; ତାଙ୍କ ବୀରତ୍ୱ ଓ ସମରନୈପୁଣ୍ୟ ମଧ୍ୟ ଅନନ୍ୟସାଧାରଣ ଥିଲା । ଏଥି ପାଇଁ ସେ ସମ୍ରାଟଙ୍କ ଅଶେଷ ବିଶ୍ୱାସ ଆକର୍ଷଣ କରିପାରିଥିଲେ । ସେ ମୋଗଲ-ବାହିନୀର ଅଧିନାୟକରୂପେ ଲାଭକରି ବହୁବହୁ ରଣରେ ମୋଗଲର ବିଜୟ-ବୈଜୟନ୍ତୀ ଉଡ୍ଡୀନ କରିଥିଲେ । ଅକବର ତାଙ୍କୁ ଦକ୍ଷିଣ ହସ୍ତରୂପେ ଭାବି ସକଳ ବିଷୟରେ ତାହାଙ୍କର ସାହାଯ୍ୟ ନେଉଥିଲେ । ସମ୍ରାଟ ଭଲରୂପେ ବୁଝିପାରିଥିଲେ ଯେ, ମାନସିଂହଙ୍କ ଯୋଗେହିଁ ମୋଗଲ ସାମ୍ରାଜ୍ୟର ପ୍ରତିଷ୍ଠା ସମ୍ଭବପର ହୋଇଅଛି । ଯେଉଁଦିନ ମାନସିଂହ ମୋଗଲ-ଦରବାରରୁ ଅନ୍ତର୍ହିତ ହେବେ, ସେହି ଦିନ ମୋଗଲ ସାମ୍ରାଜ୍ୟ ରସାତଳଗାମୀ ହେବ । ଏଣୁକରି ସେ ମାନସିଂହଙ୍କୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିବା ବିଷୟରେ କେବେହେଁ ତ୍ରୁଟି କରୁନଥିଲେ ।

ପ୍ରତାପ ସିଂହ ଅକବରଙ୍କ ବିରୁଦ୍ଧରେ ପ୍ରକାଶ୍ୟଭାବରେ ଚେଷ୍ଟା କରିବାର ଅନେକ ଦିନ ପୂର୍ବେ ମାନସିଂହ ମୋଗଲ ସହିତ ଯୋଗଦାନ କରିସାରିଥିଲେଣି । ଭାରତବର୍ଷରେ ଏକତାର ଅଭାବରୁ ଗୋଟିଏ

କୈନ୍ଦ୍ରିକ ଶକ୍ତିର ଆବଶ୍ୟକତା ତାଙ୍କୁ ଏହି କାର୍ଯ୍ୟରେ ପ୍ରବର୍ତ୍ତିତ କରିଥିଲା । ହିନ୍ଦୁମାନେ ଯେ କେବେ ଏକତା-ସୂତ୍ରରେ ଆବଦ୍ଧ ହୋଇ ଭାରତବର୍ଷରେ ହିନ୍ଦୁସାମ୍ରାଜ୍ୟ ପ୍ରତିଷ୍ଠିତ କରିବାକୁ ପ୍ରୟାସୀ ହେବେ, ଏହି ଭାବ ତାଙ୍କ ମନରେ ଆଦୌ ସ୍ଥାନ ପାଇପାରୁନଥିଲା । ଦୌର୍ଜନ୍ୟର ପାପଯୋଗେ ହିନ୍ଦୁଜାତି ଅଧୋଗତିର ଚରମସୀମାରେ ଉପନୀତ ହୋଇଥିଲା । ଉକ୍ତ ପାପର ସମୁଚିତ ପ୍ରାୟଶ୍ଚିତ୍ତ ନ ହେବା ପର୍ଯ୍ୟନ୍ତ ହିନ୍ଦୁଜାତିର ପୁନରୁତ୍ଥାନ ଅସମ୍ଭବ ପ୍ରତୀତ ହେଉଥିଲା ।

ଏକେତ ହିନ୍ଦୁ, ହିନ୍ଦୁ ମଧ୍ୟରେ ବିବାଦ; ଏଥିଉପରେ ଭାରତୀୟ ମୁସଲମାନମାନଙ୍କ ସହିତ ବିବାଦରେ ଯୋଗ ଦେବା ଦେଶପକ୍ଷରେ କ୍ଷେମଙ୍କର ନୁହେ । ଯେତେଦିନ ପର୍ଯ୍ୟନ୍ତ ମୁସଲମାନମାନେ ବିଦେଶୀୟ ଥିଲେ, ସେତେଦିନ ପର୍ଯ୍ୟନ୍ତ ହିନ୍ଦୁମାନେ ସେମାନଙ୍କ ସହିତ ପ୍ରାଣପଣେ ଯୁଦ୍ଧ କରୁଥିଲେ । କିନ୍ତୁ ଅଧୁନା ହିନ୍ଦୁମୁସଲମାନ ଏକ ମାତାର ସନ୍ତାନ । ସେମାନଙ୍କ ସ୍ୱାର୍ଥରେ ଆଉ ରାଜନୈତିକ ପାର୍ଥକ୍ୟର ସତ୍ତା ନାହିଁ । ଯେପରି ଗଙ୍ଗା ଓ ଯମୁନାର ସଙ୍ଗମସ୍ଥାନରେ ପ୍ରୟାଗକ୍ଷେତ୍ରର ସୃଷ୍ଟି ହୋଇଅଛି, ସେପରି ହିନ୍ଦୁ ଓ ମୁସଲମାନମାନଙ୍କ ମିଳନରେହିଁ ମହା-ଭାରତସାମ୍ରାଜ୍ୟର ସୃଷ୍ଟି ହେବ । ମାନସିଂହ ଏହି ମହାଭାରତସାମ୍ରାଜ୍ୟର ପ୍ରତିଷ୍ଠା କାମନାରେ ମୋଗଲ ସହିତ ମିଳିତ ହୋଇଥିଲେ—କେବଳ ମିଳିତ ହେବାରେ ତାଙ୍କ କାର୍ଯ୍ୟ ଶେଷ ହୋଇନଥିଲା; ସେ ଏହି ପବିତ୍ର କାର୍ଯ୍ୟରେ ପଟ୍ଟପୁରୋହିତତ୍ୱ ଗ୍ରହଣ କରିଥିଲେ ।

କିନ୍ତୁ ତାଙ୍କ କାର୍ଯ୍ୟ ସମାପ୍ତି ଦିଗକୁ ଅଗ୍ରସର ହେଲାବେଳକୁ ପ୍ରତାପସିଂହ ଗୋଟିଏ ନୂତନ ବାଧା ଆରମ୍ଭ କଲେ । ମାନସିଂହଙ୍କ ମୋହ ଅପସାରିତ ହେଲା । ସେ ନିଜ ଭ୍ରମ ବୁଝିପାରି ମନେମନେ ନିରତିଶୟ ବ୍ୟଥିତ ହେବାକୁ ଲାଗିଲେ । ଯଦି ରାଜସ୍ଥାନର ସମସ୍ତ ରାଜା ମିଳିତ

ହୁଅନ୍ତି, ମୋଗଲମାନଙ୍କୁ ଭାରତବର୍ଷରୁ ତଡ଼ିଦେବା ଅତି ସହଜ ହୋଇ-ପଡ଼ିବ । କିନ୍ତୁ ଏ ମିଳନ ସମ୍ଭବ କି ? ଯୋଧପୁର ଓ ବିକାନୀର ପ୍ରଭୃତି ରାଜ୍ୟର ରାଜାମାନେ ମୃଷ୍ଟିପ୍ରଳମ୍ଭ ହେଲେ ସୁଦ୍ଧା ଅକବରଙ୍କ ପକ୍ଷ ତ୍ୟାଗ କରିବେନାହିଁ । ସମ୍ରାଟଙ୍କୁ ତୋଷାମୋଦ କରି ଏବଂ ତାଙ୍କ ଦ୍ୱାରା ସ୍ୱୀୟ ଅନୁସନ୍ଧାନ ପଦଦଳିତ ହେବାର ଦେଖି ସେମାନେ ସୋଭଦ୍ରରବର୍ତ୍ତେ ଆନନ୍ଦ ପ୍ରକାଶ କରୁଥାନ୍ତି । ସେମାନଙ୍କ ପରି ନିର୍ଲ୍ଲଜ୍ଜ ଓ କାପୁରୁଷ ରାଜାମାନେ ପ୍ରତାପସିଂହଙ୍କ ହୃଦୟର ମହତ୍ତ୍ୱ କାହୁଁ ବୁଝିବେ ? ମୋଗଲ-ଦରବାରରେ ଆସନ-ଲାଭ ସେମାନଙ୍କ ମତରେ ମନୁଷ୍ୟ-କାମନାର ଚରମ ଲକ୍ଷ୍ୟ ଅଟେ । ସ୍ୱୟଂ ଈଶ୍ୱର ଅବତୀର୍ଣ୍ଣ ହୋଇ ସେମାନଙ୍କୁ ଉପଦେଶ ଦେଲେ ସୁଦ୍ଧା ସେମାନଙ୍କ ମତିଗତି ପରିବର୍ତ୍ତିତ ହୋଇ ନ ପାରେ ।

ଅନ୍ୟ ରାଜାମାନେ ପ୍ରତାପଙ୍କ ସହ ମିଳିତ ହୋଇ ନ ପାରନ୍ତି; କିନ୍ତୁ ମାନସିଂହ ତ ମିଳିତ ହୋଇପାରନ୍ତି । ମୋଗଲ-ସେନାରେ ମାନସିଂହଙ୍କର ଅସୀମ ପ୍ରଭାବ ଅଛି । ତାଙ୍କ ଇଙ୍ଗିତଅନୁସାରେ ମୋଗଲ-ବାହିନୀ ପରିଚାଳିତ । କେବଳ ମାନସିଂହ ପ୍ରତାପଙ୍କ ସଙ୍ଗେ ଯୋଗ ଦେଲେ ମୋଗଲର ଆସନ ସହଜରେ ଟଳିଯିବ । ଆଉ ଏ ମିଳନ ମଧ୍ୟ ଅସମ୍ଭବ ନୁହେଁ । ପ୍ରତାପସିଂହଙ୍କ ପୁତ୍ର ଅମରସିଂହଙ୍କ ସହିତ ମାନସିଂହଙ୍କ ଭଗିନୀର ବିବାହ ହେଲେ ଅମ୍ବର ଓ ମେବାଡ଼ ଏକତ୍ର ମିଳିତ ହେବେ । ତେଣିକି ଯବନର ଶାସ୍ତି କ୍ଷଣକଭିତରେ ହୋଇପାରିବ । ଅବଶ୍ୟ ମୋଗଲ-ସାମ୍ରାଜ୍ୟର ଗଠନରେ ମାନସିଂହ ବହୁ ଶକ୍ତି ଓ ସମୟ ବ୍ୟୟ କରିଅଛନ୍ତି । ପ୍ରତାପଙ୍କ ସହିତ ମିଳିତ ହେଲେ ଏସବୁ ବ୍ୟର୍ଥ ହେବ ଏବଂ ହିନ୍ଦୁ-ସାମ୍ରାଜ୍ୟର ଗଠନ ନିମନ୍ତେ ନୂତନ ଶକ୍ତି ଓ ନୂତନ ସମୟ ଆବଶ୍ୟକ ହେବ । ଗୋଟିଏ ଘରକୁ

ଭାଙ୍ଗି ଆଉ ଗୋଟିଏ ନୂତନ ଘର ତୋଳାଇଲେ ଗୃହ-ନିର୍ମାତାର ମନରେ ଯେପରି କଷ୍ଟ ହୁଏ, ମାନସିଂହଙ୍କ ମନରେ ପ୍ରଥମେ ସେପରି କଷ୍ଟର ଉଦୟ ହେଲା । କିନ୍ତୁ ନିର୍ମିତ ଗୃହ ଯଦି ସର୍ବଦା ଅମଙ୍ଗଳର ଆଧାର ହୋଇଥାଏ, ସେହି ଗୃହର ବିଧ୍ୱଂସରେ କୌଣସି କ୍ଷତି ନାହିଁ । ଏପରି ଅବସ୍ଥାରେ ନୂତନ ଗୃହନିର୍ମାଣ ହିଁ ସର୍ବଦା ଶ୍ରେୟସ୍କର । ମାନସିଂହ ମଧ୍ୟ ନୂତନ ଗୃହ ନିର୍ମାଣ କରିବା ନିମନ୍ତେ ମନ ବଳାଇଲେ ।

ମାନସିଂହଙ୍କ ଅଭିପ୍ରାୟ ଅନତିବିଳମ୍ବରେ ପ୍ରତାପସିଂହଙ୍କ କର୍ଣ୍ଣଗୋଚର ହେଲା । ସ୍ୱାଧୀନତା-ଯୁଦ୍ଧରେ ମାନସିଂହଙ୍କ ସାହାଯ୍ୟ କେତେ ମୂଲ୍ୟବାନ୍, ପ୍ରତାପସିଂହଙ୍କୁ ଏହା ବୁଝାଇବା ଅନାବଶ୍ୟକ ଥିଲା । କିନ୍ତୁ ସେ ଯେଉଁ ସର୍ତ୍ତରେ ପ୍ରତାପଙ୍କ ସାହଚର୍ଯ୍ୟ କାମନା କରନ୍ତି, ପବିତ୍ର ଶିଶୋଦୀୟ ବଂଶପକ୍ଷରେ ତାହା କଳଙ୍କର ବିଷୟ ହେବ । ଅବଶ୍ୟ ଆକବରଙ୍କ ସହିତ ନିଜ ପିଉସୀର ବିବାହନିମନ୍ତେ ମାନସିଂହ ଦାୟୀ ନୁହନ୍ତି; ତଥାପି ଯେତେବେଳେ ସେ ଯବନ ସହିତ ସମ୍ପର୍କ ରଖି ନିଜ ହୃଦୟକୁ କଳୁଷିତ କରିସାରିଛନ୍ତି, ତାଙ୍କ ସହିତ ବୈବାହିକ ସମ୍ପର୍କ ରଖିବା ପ୍ରତାପଙ୍କ ଧର୍ମର ବିରୁଦ୍ଧ ହେବ । ଯଦି ମାନସିଂହ ସ୍ୱକୃତ ପାପ ନିମନ୍ତେ ଅନୁତାପ କରି ଯବନ-ସମ୍ପର୍କ ଛିଣ୍ଡାଇଥାନ୍ତେ, ତାହାହେଲେ ପ୍ରତାପ ତାଙ୍କୁ ଅତି ଆଦରରେ ଗ୍ରହଣ କରିଥାନ୍ତେ । ଅମରସିଂହଙ୍କ ସହିତ ମାନସିଂହଙ୍କ ଭଗିନୀର ବିବାହ ବିଷୟ ପରେ ଆଲୋଚିତ ହୋଇଥାନ୍ତା । କିନ୍ତୁ ମାନସିଂହ ବିପରୀତ ଦିଗରୁ କାର୍ଯ୍ୟ ଆରମ୍ଭ କରିବାକୁ ଇଚ୍ଛୁକ । ପ୍ରଥମେ ଅମରସିଂହଙ୍କ ସହିତ ତାଙ୍କ ଭଗିନୀର ବିବାହ ହୋଇଯାଉ, ପରେ ସେ ଯବନ-ସମ୍ପର୍କ ଛିଣ୍ଡାଇ ପ୍ରତାପଙ୍କ ସହିତ ମିଳିତ ହେବେ । ଏ ଯେ ଅତି ଅସମ୍ଭବ ବ୍ୟାପାର୍ ! ପ୍ରତାପସିଂହ ଏପରି ଜଘନ୍ୟ କାର୍ଯ୍ୟରେ କଦାପି ହାତ ଦେବେନାହିଁ । ବରଂ ଏକୁଟିଆ ଯୁଦ୍ଧ କରିବା ଭଲ; କିନ୍ତୁ ଏପରି କୁଟିଳତା ଓ ହୀନତା ଭିତରେ ପ୍ରବେଶ କରିବା ବୀରର ଧର୍ମ ନୁହେ ।

ଅନେକେ ହୁଏତ ମନେ କରିପାରନ୍ତି ଯେ, ପ୍ରତାପଙ୍କ ସିଦ୍ଧାନ୍ତ ରାଜନୀତି-ସମ୍ମତ ନୁହେଁ । ଉଦ୍ଦେଶ୍ୟ-ସାଧନ ନିମନ୍ତେ ପନ୍ଥାର ଉପଯୁକ୍ତତା ହିଁ ରାଜନୀତିର ଲକ୍ଷ୍ୟ; ପନ୍ଥାର ଜଘନ୍ୟତା ବା ପବିତ୍ରତାର ବିଚାର କୁଟିଳ ରାଜନୀତିର ସୀମା ସ୍ପର୍ଶ କରେନାହିଁ । କିନ୍ତୁ ପ୍ରତାପଙ୍କ ନୀତି ଏଥିରୁ ସଂପୂର୍ଣ୍ଣ ପୃଥକ୍ । ସେଥିରେ କୁଟିଳତା କିମ୍ବା ନୀଚତାର ସ୍ଥାନ ନାହିଁ । ପ୍ରତାପଙ୍କ ରାଜନୀତି ପ୍ରଭାତ-ଅରୁଣର କନକରଶ୍ମି ସଦୃଶ ଶୁଭ୍ର ଓ ଅନାବିଲ । ବରଂ ସେ ପରାଜୟର ଉତ୍ତପ୍ତ ମରୁଭୂମିରେ ବିଲୀନ ହେବେ; କିନ୍ତୁ କୁଟିଳତାର ଗଣ୍ଡି ମଧ୍ୟରେ ବିଚରଣ କରି ଐଶ୍ୱର୍ଯ୍ୟର ନନ୍ଦନକାନନରେ ଅଧିଷ୍ଠିତ ହେବେନାହିଁ ।

ଅକବରଙ୍କ ପ୍ରଧାନ ଯୁଦ୍ଧଗୁଡ଼ିକ ମାନସିଂହଙ୍କ ନାୟକତ୍ୱରେ ସମାହିତ ହୋଇଥିଲା । ଆମ୍ଭେମାନେ ଯେଉଁ ସମୟର କଥା କହୁଅଛୁଁ, ସେ ସମୟରେ ସେ ଶୋଲାପୁର ବିରୁଦ୍ଧରେ ସମରଯାତ୍ରା କରିଥିଲେ । ଯୁଦ୍ଧରେ ଜୟଲାଭ କରି ପ୍ରତ୍ୟାବୃତ୍ତ ହେବା ସମୟରେ ସେ ଜାଣିଶୁଣି ମେବାଡ଼ବାଟରେ ଦିଲ୍ଲୀ-ଅଭିମୁଖରେ ଯାତ୍ରା କଲେ । ତାଙ୍କ ଆଗମନ-ବୃତ୍ତାନ୍ତ ଜାଣି ପ୍ରତାପସିଂହ ଆଗରୁ ତାଙ୍କ ଅତିଥ୍ୟ ନିମନ୍ତେ ସବିଶେଷ ଆୟୋଜନ କରିସାରିଥିଲେ । ଯଥାସମୟରେ ମାନସିଂହ କମଲମୀରରେ ଉପନୀତ ହୁଅନ୍ତେ, ଅମର ସିଂହ ତାଙ୍କ ପରିଚର୍ଯ୍ୟାରେ ନିଯୁକ୍ତ ହେଲେ । ନାନାପ୍ରକାର ଖାଦ୍ୟଦ୍ରବ୍ୟ ମାନସିଂହଙ୍କ ନିମନ୍ତେ ପରିବେଶିତ ହେଲା । ଅମରସିଂହ ନିଜେ ତହିଁର ତତ୍ତ୍ୱାବଧାରକ ଥିବାଠାରେ କୌଣସି ଆୟୋଜନର ତ୍ରୁଟି ହୋଇନଥିଲା । କିନ୍ତୁ ଭୋଜନାଗାରରେ ପ୍ରତାପସିଂହଙ୍କ ଅନୁପସ୍ଥିତି ମାନସିଂହଙ୍କୁ ନିରତିଶୟ ସଂଶୟାପନ୍ନ କରିଥିଲା । ପ୍ରଥମେ ସେ ଏଥିର କାରଣ କିଛି ବୁଝି ପାରିଲେ ନାହିଁ । ଅମରସିଂହଙ୍କୁ ପଚାରି ଅବଗତ ହେଲେ ଯେ, ପ୍ରତାପ ଶିରୋବ୍ୟଥାରେ ପୀଡ଼ିତ ଥିବାରୁ

ମାନସିଂହଙ୍କ ସହିତ ଏକତ୍ର ଭୋଜନ କରିବାକୁ ଅସମର୍ଥ ହୋଇଥିଲେ । କିନ୍ତୁ ଏହି କାରଣ ତାଙ୍କ ସନ୍ତୋଷବିଧାନ କରିପାରିଲାନାହିଁ । ତାଙ୍କ ମନରେ ନାନାପ୍ରକାର ଭାବ ଜାତ ହେବାକୁ ଲାଗିଲା । ପ୍ରତାପସିଂହ ଯେ ତାଙ୍କୁ ନୀଚ ଜ୍ଞାନ କରି ତାଙ୍କ ସହିତ ଏକତ୍ର ଭୋଜନ କରିବାକୁ ଅନିଚ୍ଛୁକ, ଏ ବିଷୟରେ ତାଙ୍କର ଆଉ କୌଣସି ସନ୍ଦେହ ରହିଲାନାହିଁ । କ୍ରୋଧରେ ତାଙ୍କ ସର୍ବାଙ୍ଗ ପ୍ରକମ୍ପିତ ହେବାକୁଲାଗିଲା । ସେ ଅନ୍ନସ୍ପର୍ଶ ନ କରି ଆସନରୁ ଉଠି କ୍ରୋଧବିକମ୍ପିତ ସ୍ୱରରେ କହିଲେ, "ପ୍ରତାପସିଂହଙ୍କ ଅଭିପ୍ରାୟ ସହଜରେ ବୁଝାଯାଉଅଛି । ମେବାଡ଼ ନୀଚ କି ଅମ୍ବର ନୀଚ, ତାହା ଯୁଦ୍ଧ-କ୍ଷେତ୍ରରେ ପ୍ରମାଣିତ ହେବ ।"

ମାନସିଂହଙ୍କ ଉକ୍ତି ଶୁଣି ପ୍ରତାପସିଂହ ଆଉ ଅନ୍ତରାଳରେ ଲୁଚି ରହିପାରିଲେନାହିଁ । ଶୀଘ୍ର ମାନସିଂହଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଗର୍ବିତ ସ୍ୱରରେ କହିଲେ, "ଯେ ଯବନ ସହିତ ଏକତ୍ର ପାନଭୋଜନ କରେ, ମେବାଡ଼ର ରାଣା ତାହା ସହିତ ଏକତ୍ର ଭୋଜନରେ ବସିବାକୁ ଅନିଚ୍ଛୁକ ।"

ପ୍ରତାପଙ୍କ ଆବିର୍ଭାବ ପୂର୍ବେ ମାନସିଂହ ଇଷ୍ଟଦେବତାଙ୍କୁ କେତେକ ଅନ୍ନ ସମର୍ପଣ କରିସାରିଥିଲେ । ଏଣୁ ଳେ ଅଗତ୍ୟା ସେହି ଅନ୍ନକୁ ନିଜ ଉଷ୍ଣୀଷ ମଧ୍ୟରେ ରଖିବାକୁ ବାଧ୍ୟ ହେଲେ । କୁଟିଳ ଦୃଷ୍ଟିପାତପୂର୍ବକ ପ୍ରତାପଙ୍କୁ ଲକ୍ଷ୍ୟ କରି କହିଲେ, "ଆମ୍ଭେ ଆଜ ପର୍ଯ୍ୟନ୍ତ ଦିଲ୍ଲୀର ସମ୍ରାଟଙ୍କୁ ନିବୃତ୍ତ ରଖିଥିଲୁଁ । ଆଜିର ଅପମାନର ପ୍ରତିଶୋଧ ଯୁଦ୍ଧକ୍ଷେତ୍ରରେ ନିଆଯିବ ।" ପ୍ରତାପ ଉତ୍ତର କଲେ, "ଆପଣଙ୍କ କଥା ଶୁଣି ପରମ ସନ୍ତୁଷ୍ଟ ହେଲି । ରଣ-କ୍ଷେତ୍ରରେ ଆପଣଙ୍କ ସହିତ ସାକ୍ଷାତ୍ ହେଲେ ସୁଖୀ ହେବି ।" ପ୍ରତାପଙ୍କ ବାକ୍ୟ ଶେଷ ନ ହେଉଣୁ ପଶ୍ଚାଦ୍ଭାଗରୁ ଗୋଟିଏ ଶ୍ଳେଷବ୍ୟଞ୍ଜକ ସ୍ୱର ସମୁଥିତ ହେଲା, "ଆପଣଙ୍କ ପୁଫା (ପିଉସା) ଆକବରଙ୍କୁ ମଧ୍ୟ ଆଣି

ବାକୁ ଭୁଲିବେ ନାହିଁ ।" ମାନସିଂହ କୌଣସି କଥାରେ କର୍ଣ୍ଣପାତ ନ କରି ତଦଣ୍ଡରେ କ୍ରୋଧବିକମ୍ପିତ ପଦବିକ୍ଷେପରେ ସେଠାରୁ ବିଦାୟ ଗ୍ରହଣ କଲେ ।

ଏହାପର ଅପ୍ରତ୍ୟାଶିତଭାବରେ ଦିଲ୍ଲୀ ଓ ମେବାଡ଼ ମଧ୍ୟରେ ବିବାଦର ସୂତ୍ରପାତ ହେଲା । ମେବାଡ଼ର ରାଜନୈତିକ ଗଗନ ପୁନର୍ବାର ଘନାନ୍ଧକାରରେ ଆଚ୍ଛନ୍ନ ହେଲା ।



## ଷଷ୍ଠ ପରିଚ୍ଛେଦ ।

# କଣ୍ଟକେନୈବ କଣ୍ଟକଂ

ଇତିହାସରେ ଅକବରଙ୍କ ଉଦାରତା ଶତମୁଖରେ ପ୍ରଶଂସିତ । ହିନ୍ଦୁ ଓ ମୁସଲମାନମାନଙ୍କ ଏକତ୍ରୀକରଣବିଷୟରେ ସେ ପ୍ରଥମେ ବାଟ ଫିଟାଇଥିଲେ । ତାଙ୍କ ପୂର୍ବେ କୌଣସି ସମ୍ରାଟ ଏ ନୀତି ଅନୁସରଣ କରି-ନ ଥିଲେ । ତେଣୁକରି ସେମାନେ ଭାରତବର୍ଷରେ ଏକାଧିପତ୍ୟ ସ୍ଥାପିନ କରିବାକୁ ସମର୍ଥ ହୋଇ ନ ଥିଲେ । ଭାରତବର୍ଷରେ ହିନ୍ଦୁ ଓ ମୁସଲମାନ ଉଭୟ ଜାତିର ସମାନ ଅଧିକାର ଅଛି । ଗୋଟିଏ ଜାତିକୁ ପଦଦଳିତ କରି ଅପର ଜାତି କଦାପି ଉନ୍ନତିଲାଭ କରି ନ ପାରେ । ଅକବରଙ୍କ ପୂର୍ବବର୍ତ୍ତୀ ସମ୍ରାଟମାନେ ହିନ୍ଦୁବିଦ୍ୱେଷୀ ଥିଲେ । ଏଣୁକରି ସେମାନେ ପ୍ରକୃତ ଭାରତ-ସାମ୍ରାଜ୍ୟ-ସ୍ଥାପନରେ ଅସମର୍ଥ ହୋଇଥିଲେ । ହିନ୍ଦୁମାନଙ୍କ ମଧ୍ୟରେ ଏକତାର ଅଭାବ ଥିଲେ ହେଁ ସେମାନେ ହିନ୍ଦୁ ନରପତିମାନଙ୍କ-ଠାରୁ ଘନ ଘନ ବାଧାପ୍ରାପ୍ତ ହୋଇ ଅତିଶୟ ଦୁର୍ବଳ ହୋଇପଡ଼ୁଥିଲେ । ବିଶେଷତଃ ରାଜସ୍ଥାନର ରାଜାମାନେ ସେମାନଙ୍କ ଶାନ୍ତି ଭଙ୍ଗର କାରଣ ଥିଲେ । ଏଣୁକରି ଭାରତବର୍ଷରେ ସେମାନଙ୍କ ସାର୍ବଭୌମତ୍ୱ ପ୍ରତିଷ୍ଠିତ ହୋଇପାରି ନ ଥିଲା ।

ଅକବର ଦିଲ୍ଲୀର ସିଂହାସନରେ ସମାସୀନ ହେବା ସମୟରେ ମୋଗଲମାନଙ୍କ ଆଧିପତ୍ୟ ଅତି ସଙ୍କୀର୍ଣ୍ଣ ଭୂଖଣ୍ଡଉପରେ ବିସ୍ତୃତ ଥିଲା । ପଠାଣମାନେ ମୋଗଲମାନଙ୍କୁ ଭାରତବର୍ଷରୁ ତଡ଼ିଦେବା ନିମନ୍ତେ ସର୍ବଦା ତତ୍ପର ଥିଲେ । ଅକବର ସେମାନଙ୍କ ସହିତ ଏକାଧିକଥର ଯୁଦ୍ଧ କରି ସେମାନଙ୍କୁ ହୀନବଳ କରିଥିଲେ । ବାବର ଓ ହୁମାୟୁନ ଯେଉଁ ଭୂଖଣ୍ଡର

ଅଧିକାରୀ ଥିଲେ, ଅକବର କେବଳ ସେଡ଼କ ଉପାଧି କରି ନିଶ୍ଚିନ୍ତ ନ ଥିଲେ । ତାଙ୍କ ରାଜତ୍ୱର ପ୍ରାରମ୍ଭରୁ ସେ ଅତି ମହତ୍ ଉଦ୍ଦେଶ୍ୟ ମନରେ ପୋଷଣ କରିଥିଲେ । ସମଗ୍ର ଭାରତବର୍ଷକୁ ମୋଗଲମାନଙ୍କ ଅଧୀନରେ ରଖିବା ତାଙ୍କ ରାଜ୍ୟଶାସନର ମୂଳମନ୍ତ୍ର ଥିଲା । ଏହି ଉଦ୍ଦେଶ୍ୟ ଦ୍ୱାରା ପ୍ରଣୋଦିତ ହୋଇ ସେ ହିନ୍ଦୁମାନଙ୍କ ସହିତ ମୈତ୍ରୀ ସଂସ୍ଥାପନ କରିଥିଲେ । ରାଜସ୍ଥାନର ଅଧିକାଂଶ ରାଜା ତାଙ୍କ ପରିବାରସହିତ ପରିଣୟ-ସୂତ୍ରରେ ଆବଦ୍ଧ ହୋଇଥିଲେ । ଏହି ରାଜାମାନେ ଅକବରଙ୍କ ସାମ୍ରାଜ୍ୟର ପ୍ରଧାନ ସ୍ତମ୍ଭସ୍ୱରୂପ ଥିଲେ ।

ଧର୍ମକ୍ଷେତ୍ରରେ ସେ ସମ୍ପୂର୍ଣ୍ଣ ଉଦାରତା ଅବଲମ୍ବନ କରିଥିଲେ । ହିନ୍ଦୁମାନେ ତାଙ୍କ ରାଜତ୍ୱକାଳରେ ଅତି ସୁଖରେ କାଳଯାପନ କରୁଥିଲେ । ସେମାନଙ୍କୁ ପ୍ରପୀଡ଼ିତ କରିବାନିମନ୍ତେ ପୂର୍ବବର୍ତ୍ତୀ ନୃପତିମାନେ ଯେଉଁ ବିଧିଗୁଡ଼ିକର ବ୍ୟବସ୍ଥା କରିଥିଲେ, ଅକବର ସେଗୁଡ଼ିକ ଉଠାଇ ଦେଇଥିଲେ । ଏଣୁକରି ମୁସଲମାନ ଇତିହାସ-ଲେଖକଗଣ ତାଙ୍କୁ ଘୃଣା-ଚକ୍ଷୁରେ ଦେଖିଥାନ୍ତି । କିନ୍ତୁ ପ୍ରକୃତ କଥା ଦେଖିବାକୁ ଗଲେ, ଏଥିରେ ହିନ୍ଦୁମାନଙ୍କର ଆନନ୍ଦିତ ହେବାର କିମ୍ବା ମୁସଲମାନମାନଙ୍କର ଦୁଃଖିତ ହେବାର କୌଣସି କାରଣ ନାହିଁ । ଦୁଃଖର କଥା, ଅକବରଙ୍କ ପ୍ରକୃତ ଚରିତ୍ର ଅଦ୍ୟପର୍ଯ୍ୟନ୍ତ ଇତିହାସରେ ପ୍ରକାଶିତ ହୋଇନାହିଁ । ତାଙ୍କ ଚରିତ୍ର ସମ୍ବନ୍ଧୀୟ ଗୂଢ଼ ତତ୍ତ୍ୱଗୁଡ଼ିକ କେବଳ ଇତିବୃତ୍ତଗ୍ରଥିତ ଗ୍ରନ୍ଥମାନଙ୍କରେ ପ୍ରକାଶ ପାଇଅଛି ।

ଅକବରଙ୍କ ରାଜନୀତି କଳଙ୍କବିବର୍ଜିତ ବୋଲି କୁହାଯାଇ-ନପାରେ । ଏ ସମ୍ବନ୍ଧରେ ଇତିହାସ ଯାହା କହୁ ପଛକେ, ଆମ୍ଭେମାନେ ପ୍ରକୃତ କଥା ଲେଖିବାକୁ ପଶ୍ଚାତ୍ପଦ ହେବୁନାହିଁ । ସ୍ୱୀକାର କରୁଅଛୁଁ, ରାଜ୍ୟଶାସନନିମନ୍ତେ ସାମ, ଦାନ, ଭେଦ ଓ ଦଣ୍ଡ ଏକାନ୍ତ ଆବଶ୍ୟକ ।

ଅବସ୍ଥା ଦେଖି ବ୍ୟବସ୍ଥା ନ କଲେ ରାଜ୍ୟଶାସନର ସୁଶୃଙ୍ଖଳା ନିର୍ବାହ ସମ୍ଭବପର ହୋଇନପାରେ । କିନ୍ତୁ ଉଦ୍ଦେଶ୍ୟସାଧନ ନିମନ୍ତେ ପନ୍ଥାର ସମୀଚୀନତା ସଙ୍ଗେ ସଙ୍ଗେ ତହିଁର କରଣୀୟତା ମଧ୍ୟ ପ୍ରଧାନ ଆଲୋଚ୍ୟ ବିଷୟ । ଅକବର ଏ ବିଷୟରେ ମନୋଯୋଗୀ ହୋଇ ପାରିନଥିଲେ । ଭାରତବର୍ଷରେ ମୋଗଲ-ସାମ୍ରାଜ୍ୟ-ସ୍ଥାପନହିଁ ତାହାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା । ଏହି ଉଦ୍ଦେଶ୍ୟର ସିଦ୍ଧିନିମନ୍ତେ ତାଙ୍କୁ ଯେତେବେଳେ ଯେଉଁ ବାଟ ମିଳୁଥିଲା, ସେ ସେହି ବାଟରେ ଗଲୁଥିଲେ । ଏଥିରେ ଅବଶ୍ୟ ତାହାଙ୍କର ମନୋରଥ ସଫଳ ହେଉଥିଲା; କିନ୍ତୁ ଅନେକ ସମୟରେ ସେ ଏପରି ଗର୍ହିତ କାର୍ଯ୍ୟ କରୁଥିଲେ ଯେ, ତାହା ଗୋଟିଏ ପ୍ରାଚ୍ୟ ସମ୍ରାଟଙ୍କ ଉପଯୋଗୀ ବୋଲି କଦାପି କୁହାଯାଇନପାରେ ।

ରାଜପୁତମାନଙ୍କ ସମ୍ମୁଖ-ସମରରେ ଜିଣିବା ମୁସଲମାନମାନଙ୍କ ପକ୍ଷରେ ଏକପ୍ରକାର ଅସମ୍ଭବ ଥିଲା । ସେମାନଙ୍କ ପ୍ରଚଣ୍ଡ ବିକ୍ରମ ସମ୍ଭାଳିବା ମୁସଲମାନର ସାଧ୍ୟାତୀତ ଥିଲା । ଅକବର ଏହା ଜାଣି କୁଟିଳ ପନ୍ଥା ଅବଲମ୍ବନ କରିବାକୁ ବାଧ୍ୟ ହୋଇଥିଲେ । ସିଂହ ବ୍ୟାଘ୍ର ପ୍ରଭୃତି ହିଂସ୍ର ଜନ୍ତୁମାନଙ୍କ ପରାକ୍ରମ କାହାରି ଅବିଦିତ ନୁହେ । ମନୁଷ୍ୟ ସେମାନଙ୍କର ଭୋଜ୍ୟ ପଦାର୍ଥ ହେଲେ ସୁଦ୍ଧା କୌଶଳରେ ସେମାନଙ୍କୁ କ୍ରୀଡ଼ାର ସାମଗ୍ରୀରୂପେ ବ୍ୟବହାର କରିଥାଏ । ପୁଣି ହସ୍ତିପରି ଅମିତବଳଶାଳୀ ଜନ୍ତୁ ପଶୁ-ଜଗତରେ ବିରଳ । କୌଶଳବଳରେ ଏହି ହସ୍ତୀ ମଧ୍ୟ ଅନାୟାସରେ କବଳିତ ହୋଇପାରେ । ବନ୍ୟ ହସ୍ତିକୁ ଧରିବାନିମନ୍ତେ ଗୋଟିଏ ପୋଷା ହସ୍ତୀର ସାହାଯ୍ୟ ଏକାନ୍ତ ଆବଶ୍ୟକ । ଏହି ପୋଷା ହସ୍ତିକୁ ଦେଖି ଅରଣ୍ୟର ହସ୍ତିମାନେ ତାହାର ନିକଟବର୍ତ୍ତୀ ହୁଅନ୍ତି ଏବଂ ଅତର୍କିତଭାବରେ ମନୁଷ୍ୟର ଜାଲରେ ନିପତିତ ହୁଅନ୍ତି । ଏହି ନୀତିର ନାମ "କଣ୍ଟକେନୈବ କଣ୍ଟକମ୍" ଅଥବା "ଗଜେନ ଗଜବନ୍ଧନମ୍ ।" ଅକବର ଏହି ନୀତିର ସାହାଯ୍ୟରେ ରାଜପୁତମାନଙ୍କୁ ବଶୀଭୂତ କରିଥିଲେ ।

ସମଗ୍ର ଆର୍ଯ୍ୟାବର୍ତ୍ତ ଅକବରଙ୍କ ପଦାନତ ହୋଇଥିବାଠାରେ କ୍ଷୁଦ୍ର ମେବାଡ଼ର ସ୍ୱାଧୀନତା ତାଙ୍କ ପକ୍ଷରେ ଅସହ୍ୟ ହୋଇଥିଲା । କିନ୍ତୁ ମେବାଡ଼ର ରାଣା ପ୍ରତାପସିଂହଙ୍କୁ ଜିଣିବା ସହଜ ନୁହେ । ସେ ଇଚ୍ଛା କଲେ ଅକବରଙ୍କୁ ନାସିକା-ବାୟୁରେ ଉଡ଼ାଇ ଦେଇପାରନ୍ତି । ପୁଣି ରାଜପୁତ-ମାନେ ତାଙ୍କୁ ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତି କରନ୍ତି । ଏପରି ଅବସ୍ଥାରେ ତାଙ୍କ ବିରୁଦ୍ଧରେ ଯୁଦ୍ଧଘୋଷଣା କରିବା ଅକବରଙ୍କ ପକ୍ଷରେ କଦାପି ମଙ୍ଗଳପ୍ରଦ ହେବନାହିଁ । କେଜାଣି, ମାନସିଂହଙ୍କ ସାହାଯ୍ୟରେ ଏହି କାର୍ଯ୍ୟ ସମ୍ଭବ ହୋଇପାରେ ! କିନ୍ତୁ ମାନସିଂହ ପ୍ରତାପଙ୍କୁ ଦେବତାଜ୍ଞାନରେ ଭକ୍ତି କରନ୍ତି । ସେ କଦାପି ତାଙ୍କ ବିରୁଦ୍ଧରେ ଅଗ୍ରସର ହେବେନାହିଁ । ବରଂ ଅକବର ଏ ବିଷୟରେ ଜିଦ୍ କଲେ ସେ ମୋଗଲପକ୍ଷ ପରିତ୍ୟାଗ କରିପାରନ୍ତି । ଅକବର ଏସବୁ ବିଚାର କରି ପ୍ରତାପଙ୍କ ସମ୍ବନ୍ଧରେ ନିଶ୍ଚେଷ୍ଟ ଥିଲେ ।

କିନ୍ତୁ ଅଘଟନ-ଘଟନକାରୀ ବିଧାତାଙ୍କ ଅସାଧ୍ୟ କିଛି ନାହିଁ । ସେ ସମ୍ଭବକୁ ଅସମ୍ଭବ ଏବଂ ଅସମ୍ଭବକୁ ସମ୍ଭବ କରିପାରନ୍ତି । କିଏ ଭାବି-ଥିଲା ଯେ, ଅତି ସାମାନ୍ୟ କାରଣରେ ପ୍ରତାପ ଓ ମାନରାଜଙ୍କ ମଧ୍ୟରେ ଭୀଷଣ ବିବାଦ ସଂଜାତ ହୋଇ ଭାରତର ଭାଗ୍ୟକୁ ଅନ୍ୟ ଦିଗକୁ ଟାଣିନେବ ?

ପ୍ରତାପସିଂହଙ୍କଠାରୁ ବିଦାୟ ନେଲାଉତ୍ତାରୁ ମାନସିଂହଙ୍କ ମନୋ-ଗତ ଭାବର ଆକସ୍ମିକ ପରିବର୍ତ୍ତନ ହୋଇଥିଲା । ସେ ଯାହାଙ୍କୁ ଭକ୍ତି କରୁଥିଲେ, ଯାହାଙ୍କ ସହିତ ମିଳିତ ହେବାନିମନ୍ତେ ଉଦୟପୁରକୁ ଗମନ କରିଥିଲେ, ସେହି ପ୍ରତାପସିଂହ ତାଙ୍କ ସହିତ ଏକାଠି ଭୋଜନ କରିବାକୁ ମଧ୍ୟ ଅନିଚ୍ଛା ପ୍ରକାଶ କଲେ ! ମାନସିଂହ କଦାପି ଏ ଅପମାନର ଯୋଗ୍ୟ ନୁହନ୍ତି । ମୋଗଲ ସହିତ ମିଳିତ ହୋଇଥିଲେ ସୁଦ୍ଧା ସେ ଦେଶଦ୍ରୋହୀ ନୁହନ୍ତି । ଭାରତବର୍ଷରେ ଏକଚ୍ଛତ୍ର ଅନନ୍ତ ନିମନ୍ତେ ସେ ଯବନର ପକ୍ଷ

ଅବଲମ୍ବନ କରିଅଛନ୍ତି । ତାଙ୍କ କାର୍ଯ୍ୟର ପରିଣାମ କଣ ହେବ ଈଶ୍ୱରଙ୍କୁ ଜଣା; କିନ୍ତୁ ତାହାଙ୍କ ଉଦ୍ଦେଶ୍ୟ ଯେ ମହତ୍, ଏ ବିଷୟରେ ମତଦ୍ୱୈଧ ରହିନପାରେ ।

ପୁଣି ଅକବରଙ୍କ ସହିତ ତାଙ୍କ ପିତୃସ୍ୱସାଙ୍କ ବିବାହନିମନ୍ତେ ତାଙ୍କୁ ଦୋଷ ଦେବା ଅନ୍ୟାୟ । ଏହି କାର୍ଯ୍ୟ ତାଙ୍କ ପିତାଙ୍କଦ୍ୱାରା ସାଧିତ ହୋଇଥିଲା । ପିତାଙ୍କ କାର୍ଯ୍ୟନିମନ୍ତେ ପୁତ୍ର ଦାୟୀ ନୁହନ୍ତି । ପୁଣି ସେ ନିଜେ ଏତାଦୃଶ ବିବାହ-ପ୍ରଥାର ବିରୋଧୀ । ଏଥିପାଇଁ ତ ଅମରସିଂହଙ୍କ ସହିତ ତାଙ୍କ ଭଗିନୀଙ୍କୁ ବିବାହିତା କରିବା ନିମନ୍ତେ ତାଙ୍କର ଏତେ ଆଗ୍ରହ । ତେବେ ପ୍ରତାପ ତାଙ୍କଠାରେ କେଉଁ ଦୋଷ ଦେଖିଲେ? କେଉଁ ଦୋଷନିମନ୍ତେ ତାଙ୍କୁ ଏପରିଭାବରେ ଅପମାନିତ କଲେ ?

ଅବଶ୍ୟ ମୋଗଲ ସହିତ ମାନସିଂହ ଏକତ୍ର ପାନଭୋଜନ କରି-ଅଛନ୍ତି । ଏହା ଯେ ଅତି ଗୁରୁତର ପାପ ! ହିନ୍ଦୁ ହୋଇ ଯବନ ସହିତ ଏକାଠି ଭୋଜନ କରିବାଠାରୁ ବଳି ପାପ ଆଉ ନାହିଁ । ଏହି ପାପ ନିମନ୍ତେ ସେ ପ୍ରତାପସିଂହଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଅଛନ୍ତି । ପ୍ରତାପ ଦେବତା; ତାଙ୍କ ସହିତ ଭୋଜନରେ ସାହଚର୍ଯ୍ୟ କାମନା କରିବା ପାପୀ ମାନସିଂହଙ୍କ ପକ୍ଷରେ ଧୃଷ୍ଟତା ନୁହେଁ କି ? ବାମନର ଚନ୍ଦ୍ର-ସ୍ପର୍ଶ-ପ୍ରୟାସସଦୃଶ ଏହା ଉପହାସାସ୍ପଦ । ମାନସିଂହଙ୍କ ସହିତ ଭୋଜନ କରିବାକୁ ଅନିଚ୍ଛା ପ୍ରକାଶ କରି ପ୍ରତାପସିଂହ ଉଚିତ କାର୍ଯ୍ୟ କରିଅଛନ୍ତି । ଏଥିନିମନ୍ତେ କ୍ରୋଧ ପ୍ରକାଶ କରି ମାନସିଂହ ଅନ୍ୟାୟ କରିଅଛନ୍ତି । ତେବେ କଣ ପ୍ରତାପ-ସିଂହଙ୍କୁ କ୍ଷମା ମାଗିବାକୁ ହେବ ? ଏହା ଛଡ଼ା ଯେ ଆଉ ଅନ୍ୟ ଉପାୟ ନାହିଁ ।

କିନ୍ତୁ ଆଉ ଗୋଟିଏ କଥା । ଉକ୍ତ ପାପ ନିମନ୍ତେ ମାନସିଂହ ଯଥେଷ୍ଟ ଅନୁତପ୍ତ ହୋଇଅଛନ୍ତି । ଏ ବିଷୟ ମଧ୍ୟ ପ୍ରତାପସିଂହଙ୍କର ଅଜ୍ଞାତ

ନୁହେ । ମାନସିଂହଙ୍କ ଉଦୟପୁର-ଗମନର ଉଦ୍ଦେଶ୍ୟ ପ୍ରତାପସିଂହ ଜାଣିଥିଲେ । ତଥାପି ସେ ତାଙ୍କୁ ଏପରିଭାବରେ ଅପମାନିତ କଲେ । ପାପୀ ଅନୁତପ୍ତ ହେଲେ ସ୍ୱୟଂ ଈଶ୍ୱର ତାଙ୍କୁ ଗ୍ରହଣ କରିଥାନ୍ତି; କିନ୍ତୁ ବଳଦୃପ୍ତ ପ୍ରତାପ ତାହା କଲେନାହିଁ । ଦିଲ୍ଲୀଦରବାରର ସମସ୍ତ ମାୟାମମତା ପରିତ୍ୟାଗ କରି ମାନସିଂହ ତାଙ୍କ ନିକଟକୁ ଗମନ କରିଥିଲେ— ତାଙ୍କ ସହିତ ମିଳିତ ହୋଇ ଦେଶର ଶତ୍ରୁକୁ ନିର୍ମୂଳ କରିବା ନିମନ୍ତେ ଅମ୍ବରାଧିପତିଙ୍କର ଏକାନ୍ତ ଇଚ୍ଛା ଥିଲା । କିନ୍ତୁ ପ୍ରତାପ ତାଙ୍କୁ ଗ୍ରହଣ କଲେନାହିଁ । କେବଳ ଯେ ଗ୍ରହଣ କଲେନାହିଁ, ଏମନ୍ତ ନୁହେ; ତାଙ୍କୁ ଭୀଷଣଭାବରେ ଅପମାନିତ କଲେ । ଏ ଅପମାନର ପ୍ରତିଶୋଧ-ଗ୍ରହଣ ଅବଶ୍ୟ କରଣୀୟ । ମାନସିଂହ ଏହା କଦାପି ଭୁଲିନପାରନ୍ତି । ପ୍ରତାପସିଂହ ଜାଣନ୍ତି ଯେ, ମାନସିଂହ ତାଙ୍କ ଅପେକ୍ଷା ଶ୍ରେଷ୍ଠ ନହେଲେ ସୁଦ୍ଧା ତାଙ୍କ ସମକକ୍ଷ ଅଟନ୍ତି ।

ଏବେ ଚିନ୍ତାପରେ ମାନସିଂହଙ୍କ କର୍ତ୍ତବ୍ୟ ନିର୍ଦ୍ଧାରିତ ହେଲା । ଅକବରଙ୍କ ସାହାଯ୍ୟରେ ପ୍ରତାପଙ୍କୁ ପରାଜିତ ଓ ଅପମାନିତ କରିବା ନିମନ୍ତେ ସେ କୃତନିଶ୍ଚୟ ହେଲେ ।

ଅକବର ଏହାହିଁ ଖୋଜୁଥିଲେ । ତାହାଙ୍କର ଚିରପୋଷିତ ବାଞ୍ଛା ଅତି ସଫଳ ହେଲା । ମାନସିଂହ ତାଙ୍କ ନିକଟକୁ ଯାଇ ମେବାଡ଼ ବିରୁଦ୍ଧରେ ସମରାଭିଯାନର ପ୍ରସ୍ତାବ କରନ୍ତେ ଚତୁର ଅକବର ତାଙ୍କ ଅପମାନରେ ସହାନୁଭୂତି-ପ୍ରକାଶପୂର୍ବକ ତାଙ୍କ ପ୍ରସ୍ତାବ ଗ୍ରହଣକଲେ । ସେ ମାନସିଂହଙ୍କୁ କହିଲେ ଯେ, ପ୍ରତାପଙ୍କ ସହିତ ଯୁଦ୍ଧ କରିବାକୁ ତାଙ୍କର ଆଦୌ ଇଚ୍ଛା ନ ଥିଲା । କିନ୍ତୁ ଅଗତ୍ୟା ଏବେ ନିଜ ଇଚ୍ଛାବିରୁଦ୍ଧରେ ଏହି କାର୍ଯ୍ୟ କରିବାକୁ ପଡ଼ୁଅଛି । ମାନସିଂହଙ୍କ ଅପମାନରେ ସମ୍ରାଟ ନିଜେ ଅପମାନିତ ହୋଇଅଛନ୍ତି । ଭାରତବର୍ଷର ସମ୍ରାଟ ଏ ଅପମାନର ପ୍ରତିଶୋଧ ନ ନେଲେ କଦାପି ସୁଖରେ ନିଦ୍ରା କରିପାରିବେ ନାହିଁ । ଅକବରଙ୍କ କଥାରେ

ମାନସିଂହ ଆଶ୍ୱସ୍ତ ହେଲେ ଏବଂ ହର୍ଷୋତ୍‌ଫୁଲ୍ଲ ଚିତ୍ତରେ ସ୍ୱୀୟ ବିଶ୍ରାମ-କକ୍ଷକୁ ପ୍ରସ୍ଥାନ କଲେ । ହାୟ ! ସେ ବୁଝିପାରିଲେନାହିଁ ଯେ, ପ୍ରତାପରୂପୀ କଣ୍ଟକକୁ ଦୂର କରିବାନିମନ୍ତେ ଅକବର ସେହି କଣ୍ଟକର ଆଶ୍ରୟ ନେଉଅଛନ୍ତି । ଯଦି ସେ ଏତକ ବୁଝିଥାନ୍ତେ, ତାହାହେଲେ ଭାରତବର୍ଷର ଇତିହାସ ଅନ୍ୟ ଆକାର ଧାରଣ କରିଥାନ୍ତା । ହିନ୍ଦୁଜାତିର ଦୁର୍ଭାଗ୍ୟଫଳରୁ ମାନସିଂହଙ୍କ ପରି ବିଚକ୍ଷଣ ବ୍ୟକ୍ତି କପଟୀ ଅକବରଙ୍କ ମାୟା-ଜାଲରେ ନିପତିତ ହେଲେ । ଭାରତର ସମସ୍ତ ଆଶା-ଭରସା ବିଲୁପ୍ତ ହେଲା ।



## ସପ୍ତମ ପରିଚ୍ଛେଦ

# ସଂଶୟାରମ୍ଭ



ଆଜି ଅକବରଙ୍କ ଉଦ୍ଦେଶ୍ୟ ସଫଳ ହୋଇଅଛି । ମେବାଡ଼ାକ୍ରମଣର ଉପାୟ ତାହାଙ୍କର ହସ୍ତଗତ ହୋଇଅଛି । ତାଙ୍କ କାର୍ଯ୍ୟରେ ସାହଚର୍ଯ୍ୟ କରିବା ନିମନ୍ତେ ମାନସିଂହ ଓ ଶକ୍ତସିଂହ ସମ୍ମତିପ୍ରଦାନ କରିଅଛନ୍ତି । ଆଜି ସମ୍ରାଟଙ୍କ ଆନନ୍ଦ କହିଲେ ନ ସରେ । ତାହାଙ୍କର କଳ୍ପନା-ଚକ୍ଷୁର ସମକ୍ଷରେ ଧୂଳିବିଲୁଣ୍ଠିତା ମେବାଡ଼-ରାଣୀଙ୍କ କରୁଣ ଛବି ପ୍ରତିଭାତ ହେଉ ଅଛି । ପ୍ରତାପଙ୍କ ଉନ୍ନତ ମସ୍ତକ ଅବନତ ହୋଇଅଛି ।

ପ୍ରତାପଙ୍କୁ କରଗତ କରିବା ନିମନ୍ତେ ଅକବର ନିଜର ସମସ୍ତ ଶକ୍ତି ନିୟୋଜିତ କରିବାକୁ ଇଚ୍ଛୁକ । ସେ ଭଲରୂପେ ଜାଣନ୍ତି ଯେ, ପ୍ରତାପ କ୍ଷୁଦ୍ର ରାଜ୍ୟର ଅଧୀଶ୍ୱର ହେଲେ ସୁଦ୍ଧା ସଂଗ୍ରାମରେ ଅଜେୟ । ଏପରି ଶତ୍ରୁକୁ ଜିଣିବା ନିମନ୍ତେ ବିଶିଷ୍ଟ ଆୟୋଜନ ଆବଶ୍ୟକ ।

ମେବାଡ଼ ବିରୁଦ୍ଧରେ ସମରାଭିଯାନ କରିବା ନିମନ୍ତେ ଶୀଘ୍ର ବିଶାଳ ବାହିନୀ ଗଠିତ ହେଲା । ସାମ୍ରାଜ୍ୟର ବିଭିନ୍ନ କେନ୍ଦ୍ରରେ ଅବସ୍ଥାପିତ ସୈନିକମାନେ ଦିଲ୍ଲୀରେ ସମବେତ ହେଲେ । ସାମ୍ରାଜ୍ୟର ଏକ ପ୍ରାନ୍ତରୁ ଅପର ପ୍ରାନ୍ତଯାଏ ଉତ୍ସାହର ତରଙ୍ଗ ନୃତ୍ୟ କରିବାକୁ ଲାଗିଲା । ଲୋକଙ୍କ ମନରେ ନାନାପ୍ରକାର ଭାବ ସମୁଦିତ ହେବାକୁ ଲାଗିଲା । ମୁସଲମାନମାନଙ୍କ ମୁଖକମଳ ଆନନ୍ଦର ଶୁଭ୍ର ରେଖାରେ ସମୁଜ୍ଜ୍ୱଳ ହେଲା । ହିନ୍ଦୁମାନଙ୍କ ମାନସିକ ଭାବର ସମ୍ୟକ୍ ଅଭିବ୍ୟକ୍ତି ଏଠାରେ ଏକ ପ୍ରକାର ଅସମ୍ଭବ ।

ସମ୍ୟକ୍ ଉପଲବ୍ଧି କରି ଅତି ସତର୍କଭାବରେ କାର୍ଯ୍ୟ କରିବାକୁ ଲାଗିଲେ । ଗୋଟିଏ ସାମ୍ରାଜ୍ୟ ବିରୁଦ୍ଧରେ ସମ୍ମୁଖଯାନ କରିବାନିମନ୍ତେ ଯେଉଁ ସେନାବଳ ଆବଶ୍ୟକ, କ୍ଷୁଦ୍ର ମେବାଡ଼ବିରୁଦ୍ଧରେ ସେପରି ଗୋଟିଏ ବିଶାଳ ବାହିନୀ ଅତିଶୀଘ୍ର ଗଠିତ ହେଲା । ଏଥିପୂର୍ବେ ଅକବର ଅନେକ ଜନପଦବିରୁଦ୍ଧରେ ଅନେକ ସୈନ୍ୟ ପଠାଇଥିଲେ; କିନ୍ତୁ ଏପରି ପ୍ରକାଣ୍ଡ ଆୟୋଜନ ସେ କେବେ କରିନଥିଲେ । ସେ ଭଲରୂପେ ଜାଣିଥିଲେ ଯେ, ଏହି ଯୁଦ୍ଧର ଫଳାଫଳ ଉପରେ ମୋଗଲ-ସାମ୍ରାଜ୍ୟର ଭବିଷ୍ୟତ୍ ନିର୍ଭର କରେ । ଏଥିପାଇଁ ପ୍ରତାପଙ୍କ ବିପକ୍ଷରେ ତାହାଙ୍କର ସମଗ୍ର ଶକ୍ତି ନିୟୋଜିତ କରିବାକୁ ସେ କୁଣ୍ଠିତ ହୋଇନଥିଲେ ।

ଆମ୍ଭେମାନେ ଆଗରୁ କହିଅଛୁଁ ଯେ, ଅକବରଙ୍କ ପ୍ରଧାନ ଯୁଦ୍ଧଗୁଡ଼ିକ ମାନସିଂହଙ୍କ ନେତୃତ୍ୱରେ ପରିଚାଳିତ ହୋଇଥିଲା; କିନ୍ତୁ ଏଥର ସେ ଆଉ ସେନାପତି-ପଦରେ ବରିତ ହେଲେନାହିଁ, ସେନାପତି ହେଲେ ଅକବରଙ୍କର ଜ୍ୟେଷ୍ଠ ପୁତ୍ର ଯୁବରାଜ ସେଲିମ୍ । ଅକବର ଏତାବତ୍କାଳ ସେଲିମଙ୍କୁ ପ୍ରୟୋଜନାନୁରୂପ ଯୁଦ୍ଧଶିକ୍ଷା ଦେଇନଥିଲେ । ସର୍ବଦା ମାନସିଂହଙ୍କ ମୁଖାପେକ୍ଷୀ ହେବାଦ୍ୱାରା ମୋଗଲ-ସାମ୍ରାଜ୍ୟର ଭିତ୍ତି କ୍ରମଶଃ ଦୁର୍ବଳ ହୋଇପଡ଼ୁଥିଲା । ସାମ୍ରାଜ୍ୟର ଭାବୀ ଶାସକ ଯୁଦ୍ଧଶିକ୍ଷାରୁ ବଞ୍ଚିତ ହେବା ସାମ୍ରାଜ୍ୟପକ୍ଷରେ ମଙ୍ଗଳଜନକ ନ ଥିଲା । ହିନ୍ଦୁର ସାହାଯ୍ୟରେ ଅକବର ଯୁଦ୍ଧଗୁଡ଼ିକରେ ଜୟଲାଭ କରିବାବିଷୟ ସମସ୍ତେ ଭଲରୂପେ ଜାଣିଥିଲେ । ତାହାଙ୍କର ସର୍ବଶ୍ରେଷ୍ଠ ଯୁଦ୍ଧରେ ସେହି ହିନ୍ଦୁର ଆଧିପତ୍ୟକୁ ପ୍ରଶ୍ରୟ ଦେବାକୁ ସେ ଅନିଚ୍ଛୁକ ଥିଲେ । ମେବାଡ଼ର ପରାଜୟରେ ସମଗ୍ର ହିନ୍ଦୁଜାତିର ପରାଜୟ ସୁନିଶ୍ଚିତ ଜାଣି ସେ ମାନସିଂହଙ୍କୁ କ୍ରମେ ଦୂରରେ ରଖିବାକୁ କୃତନିଶ୍ଚୟ ହେଲେ । କିନ୍ତୁ ପ୍ରତାପଙ୍କ ବିପକ୍ଷରେ ବାହିନୀ ଚଳାଇବାକୁ ସେଲିମଙ୍କର ଶକ୍ତି ଅଛି କି ? ସେପରି

ଶକ୍ତି ନାହିଁ ବୋଲି କଣ ଅକବର ଯୁବରାଜଙ୍କ, ମେବାଡ଼-ଜୟର ଗୌରବରୁ ବଞ୍ଚିତ କରିବେ ? ମାନସିଂହଙ୍କ ପରାମର୍ଶାନୁସାରେ କାର୍ଯ୍ୟ ହେଲେ କୌଣସି ଅସୁବିଧା ହେବ ନାହିଁ । ସେଲିମ ନାମମାତ୍ର ସେନାପତି ହୋଇ ଯୁଦ୍ଧକ୍ଷେତ୍ରକୁ ଯିବେ — ସମଗ୍ର ଯୁଦ୍ଧବ୍ୟାପାର ମାନସିଂହଙ୍କ କର୍ତ୍ତୃତ୍ୱାଧୀନରେ ରହିବ । ପୁଣି ମେବାଡ଼-ନିବାସୀ ଶକ୍ତିସିଂହ ଯୁଦ୍ଧକ୍ଷେତ୍ରରେ ଥିଲେ ସମସ୍ତ ଅସୁବିଧା ସୁବିଧାରେ ପରିଣତ ହୋଇଯିବ । ଗୁପ୍ତପଥାନୁସନ୍ଧାନ ନିମନ୍ତେ ମୋଗଲମାନଙ୍କୁ ବ୍ୟତିବ୍ୟସ୍ତ ହେବାକୁ ପଡ଼ିବ ନାହିଁ । ଏଣୁକରି ଅକବର ସେଲିମଙ୍କୁ ସେନାପତି-ପଦରେ ବରଣ କଲେ ।

ବ୍ୟବସ୍ଥାନ୍ତେ ମାନସିଂହଙ୍କୁ ହୃଦୟ ଅତ୍ୟୁଷ୍ଣ ଲାଗିଲା । ଏତାବତ୍କାଳ ସେ ଅକବରଙ୍କ ପଦତଳରେ ଗଭୀର ଆସ୍ଥା ସ୍ଥାପନ କରିଥିଲେ; କିନ୍ତୁ ଯେପରି ସୂର୍ଯ୍ୟଙ୍କ କିରଣସ୍ପର୍ଶରେ କୁଜ୍ଝଟିକା ଅପସୃତ ହୁଏ, ମାନସିଂହଙ୍କ ଭ୍ରାନ୍ତ ବିଶ୍ୱାସ ମଧ୍ୟ ସେହିପରି ଅଚିରେ ଦୂର ହୋଇଗଲା । ସେ ଅକବରଙ୍କ ନିକଟ ସଂପର୍କରେ ଥାଇ ମଧ୍ୟ ତାଙ୍କୁ ଚିହ୍ନି ପାରିଲେ ନାହିଁ; କିନ୍ତୁ ପ୍ରତାପସିଂହ ଆଗରୁ ବିପଦର ଆଶଙ୍କା କରି ଦୂରରେ ରହିଅଛନ୍ତି । ଧନ୍ୟ ପ୍ରତାପ ! ଧନ୍ୟ ତୁମ୍ଭର ଦୂରଦର୍ଶିତା ! କିନ୍ତୁ ଆଉ କାହିଁ — ସବୁ ଯେ ଶେଷ ହୋଇଅଛି ! ପ୍ରତିହିଂସା-ଗ୍ରହଣେଚ୍ଛା ମାନସିଂହଙ୍କୁ ଏକାବେଳକେ ଅନ୍ଧ କରି ଦେଇଅଛି । ପ୍ରତାପଙ୍କୁ ଅପମାନିତ ନ କରି ସେ ଛାଡ଼ିବେ ନାହିଁ । ବରଂ ମୋଗଲହସ୍ତରେ ଅପମାନ ସହିବାକୁ ହେବ; କିନ୍ତୁ ପ୍ରତାପଙ୍କକୃତ ଅପମାନର ପ୍ରତିଶୋଧ ନିଶ୍ଚୟ ନେବାକୁ ପଡ଼ିବ । ବିଧାତା ଛାଡ଼ିଲା ବେଳକୁ ମନୁଷ୍ୟର ବୁଦ୍ଧିର ଏପରି ଅପଭ୍ରଂଶ ହୋଇଥାଏ । ନୋହିଲେ କି ମାନସିଂହଙ୍କ ପରି ଲୋକ ଏପରି ଲାଞ୍ଛନା ସହି ସେଲିମଙ୍କ ଅଧୀନରେ କାର୍ଯ୍ୟ କରିବାକୁ ସ୍ୱୀକୃତ ହୋଇଥାନ୍ତେ ?

ସେଲିମଙ୍କ ସେନାପତି-ପଦ-ପ୍ରାପ୍ତି ଶକ୍ତସିଂହଙ୍କ ମନରେ ମଧ୍ୟ ସଂଶୟାରମ୍ଭ କରିଥିଲା । ସେ କୌଣସି ସ୍ୱାର୍ଥଦ୍ୱାରା ପ୍ରଣୋଦିତ ହୋଇ ଅକବରଙ୍କ ଶରଣାପନ୍ନ ହୋଇନଥିଲେ । ପ୍ରତାପସିଂହଙ୍କ ଅପକର୍ଷ-ପ୍ରତିପାଦନ ଛଡ଼ା ସେ ଅନ୍ୟ କୌଣସି ଉଦ୍ଦେଶ୍ୟକୁ ମନ ମଧ୍ୟରେ ପୋଷଣ କରୁନଥିଲେ । ମେବାଡ଼ର ସିଂହାସନରେ ତାହାଙ୍କର ଅଭିଳାଷ ନ ଥିଲା; କିନ୍ତୁ ଅକବରଙ୍କ ଆଚରଣ ଦେଖି ତାଙ୍କ ଚକ୍ଷୁ ପୂର୍ଣ୍ଣ ବିସ୍ଫାରିତ ହେଲା । ସମ୍ରାଟଙ୍କ ଉଦାରତା ସମ୍ବନ୍ଧରେ ସେ ଯାହା ଶୁଣିଥିଲେ, ସେ ସବୁର ଅଳୀକତା ଅଭ୍ରାନ୍ତ ପ୍ରତିପାଦିତ ହେଲା । ତଥାପି ସେ ମୋଗଲଙ୍କର ପକ୍ଷ ପରିତ୍ୟାଗ କଲେନାହିଁ, ଯେହେତୁ ପ୍ରତାପଙ୍କ ଅପମାନପ୍ରାପ୍ତି ପରେ ସେ ନିଜ ବାଟ ଦେଖିବାକୁ ସ୍ଥିର କରିଥିଲେ ।

ଚତୁର ଅକବରଙ୍କ ସମସ୍ତ ଚତୁରତା ଏହି ଗୋଟିଏ କାର୍ଯ୍ୟରେ ପଣ୍ଡ ହୋଇଥିଲା । ଏହି ଭ୍ରମ ନିମନ୍ତେ ତାଙ୍କୁ ପରେ ବିଶେଷ ଅନୁତାପ କରିବାକୁ ପଡ଼ିଥିଲା । ସେ ବିଷୟ ଯଥାସ୍ଥାନରେ ଆଲୋଚିତ ହେବ ।



ଅଷ୍ଟମ ପରିଚ୍ଛେଦ



# ଆୟୋଜନ



ଅକବରଙ୍କ ସହିତ ଯୁଦ୍ଧ କରିବା ନିମନ୍ତେ ପ୍ରତାପସିଂହ ଆଗନ୍ତୁ ପ୍ରସ୍ତୁତ ଥିଲେ । ଏହି କାର୍ଯ୍ୟନିମନ୍ତେ ହିଁ ସେ ନୂତନ ଦୀକ୍ଷା ଗ୍ରହଣ କରିଥିଲେ । ଯେଉଁ ଦିନ ମାନସିଂହଙ୍କ ସହିତ ତାହାଙ୍କର ବିବାଦ ଉପସ୍ଥିତ ହେଲା, ସେଦିନ ସେ ବୁଝି ପାରିଲେ ଯେ, ମୋଗଲସହିତ ଯୁଦ୍ଧ ଅନିବାର୍ଯ୍ୟ । ଏଥିରେ ସେ ଅଣୁମାତ୍ର ଦୁଃଖିତ ବା ବିଚଳିତ ହୋଇ ନ ଥିଲେ, ବରଂ ଶୀଘ୍ର ଅଭୀଷ୍ଟସିଦ୍ଧିର ସମ୍ଭାବନା ଦେଖି ଅସୀମ ଆନନ୍ଦ ଉପଭୋଗ କରିଥିଲେ ।

ଅକବରଙ୍କ ଜନବଳ ଓ ଧନବଳ ଆଗରେ ପ୍ରତାପ ଅତି ତୁଚ୍ଛ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । କାହିଁ ପ୍ରବଳପରାକ୍ରାନ୍ତ ଭାରତବର୍ଷର ସମ୍ରାଟ—କାହିଁ ହୃତାର୍ଥ ନିଃସମ୍ବଳ ମେବାଡ଼ର ରାଣା ! ଉଭୟଙ୍କ ମଧ୍ୟରେ ମେରୁ-ସୋରଷର ପ୍ରଭେଦ ବିଦ୍ୟମାନ । ଏହା ଜାଣିଶୁଣି ପ୍ରତାପସିଂହ ଅକବରଙ୍କ ପ୍ରତିଦ୍ୱନ୍ଦୀରୂପେ ଛିଡ଼ା ହୋଇଛନ୍ତି । ସମାନ ସହିତ ସମାନର ପ୍ରତିଯୋଗିତା ଶ୍ଲାଘାର ବିଷୟ ନୁହେ—ସବଳ ସହିତ ଦୁର୍ବଳର ପ୍ରତିଯୋଗିତା ହିଁ ପ୍ରକୃତ ପୁରୁଷାର୍ଥର ପରିଚାୟକ । ପୁଣି ଅତ୍ୟାଚାରୀ ଓ ଅତ୍ୟାଚାରିତର ହୃଦୟ ମଧ୍ୟରେ ଅନେକ ପାର୍ଥକ୍ୟ ଅଛି । ଦାରିଦ୍ର୍ୟ-ବ୍ରତାବଲମ୍ବୀ ଅଳ୍ପସଂଖ୍ୟକ ରାଜପୁତ ସୈନିକ ବିଶାଳ ମୋଗଲ-ବାହିନୀକୁ ପଛକୁ ଘୁଞ୍ଚାଇ ଦେଇପାରନ୍ତି । ଏହି ବିଶ୍ୱାସରେ ଅନୁପ୍ରାଣିତ ହୋଇ ପ୍ରତାପସିଂହ ସ୍ୱାଧୀନତା-ଯଜ୍ଞ ଆରମ୍ଭ କରିଥିଲେ ।

ପରାଧୀନ ଓ କାପୁରୁଷ ବ୍ୟକ୍ତି ମୃତ୍ୟୁ ପୂର୍ବରୁ ଜୀବନରେ ଅନେକ-ଥର ମୃତ୍ୟୁ-ଯନ୍ତ୍ରଣା ଭୋଗକରୁଥାଏ; କିନ୍ତୁ ସ୍ୱାଧୀନ ଓ ନିର୍ଭୀକ ମାନବ ଜୀବନରେ ଥରେମାତ୍ର ମରୁଥାଏ । ପ୍ରତାପସିଂହ ସ୍ୱାଧୀନତା-ଯୁଦ୍ଧରେ ମୃତ୍ୟୁମୁଖରେ ପତିତ ହେଲେ ତିଳପ୍ରମାଣ ଦୁଃଖପ୍ରକାଶ କରିବେନାହିଁ । ମୃତ୍ୟୁ ପ୍ରେମାଳିଙ୍ଗନ-ତାଙ୍କୁ ଦିବ୍ୟ-ସୁଖ ପ୍ରଦାନ କରିବ । ଆଉ ଯଦି ଯୁଦ୍ଧରେ ଜୟଲାଭ କରନ୍ତି, ତାହାହେଲେ ତାଙ୍କ ଉନ୍ନତ ମସ୍ତକରେ ସ୍ୱାଧୀନତା-ମଣି ବିରାଜିତ ହେବ । ହୃଦୟରେ ଏକାଗ୍ରତା ଏବଂ ଈଶ୍ୱରଙ୍କ-ଠାରେ ବିଶ୍ୱାସ ଥିଲେ ସଂସାରରେ ଅସମ୍ଭବ ମଧ୍ୟ ସମ୍ଭବ ହୋଇପାରେ ।

ପ୍ରତାପସିଂହଙ୍କର ସୌଭାଗ୍ୟ ଯେ, ମେବାଡ଼ର ପ୍ରଜାମାନେ ମଧ୍ୟ ମୃତ୍ୟୁକୁ ହେୟଜ୍ଞାନ କରୁଥିଲେ । ସ୍ୱଦେଶର ସ୍ୱାଧୀନତା ଆଗରେ ମନୁ-ଷ୍ୟର ପ୍ରାଣ କିଛି ନୁହେଁ । ଜନ୍ମସହିତ ମରଣର ଅବିଚ୍ଛେଦ୍ୟ ସମ୍ବନ୍ଧ ଥିବା-ଠାରେ ସାମାନ୍ୟ କୁକ୍କୁର-ବିଡ଼ାଲ-ସଦୃଶ୍ୟ'ନ ମତ ମନୁଷ୍ୟ ପ୍ରାୟେ ମରିବା ହିଁ ସେମାନଙ୍କର ଅଭିଳଷିତ ଥିଲା । ଏଣୁକରି ଅକବରଙ୍କ ସମରେଚ୍ଛା ମେବାଡ଼ରେ ପ୍ରଗ୍ରଭିତ ହୁଅନ୍ତେ, ପ୍ରଜାମାନେ ଆନନ୍ଦରେ ନାଚିବାକୁ ଲାଗିଲେ । ସ୍ୱାଧୀନତା ଯଜ୍ଞରେ ପ୍ରାଣବଳି ଦେବାନିମନ୍ତେ ସମସ୍ତେ ହୃଦୟ-ପୂର୍ବ ଅଗ୍ନିମୁଖରେ ଅଗ୍ରସର ହେଲେ ।

ପ୍ରତାପସିଂହ ସର୍ଦ୍ଦାରମାନଙ୍କ ସମଭିବ୍ୟାହାରରେ ଭଗବାନ୍ ଏକ-ଲିଙ୍ଗଙ୍କ ମନ୍ଦିରକୁ ଗମନକଲେ । ସେଠାରେ ଦେବାଧିଦେବ ମହାଦେବଙ୍କ ସମକ୍ଷରେ ମନ୍ତ୍ରଣା-ସଭା ବସିଲା । ସର୍ଦ୍ଦାରମାନଙ୍କୁ ଲକ୍ଷ୍ୟ କରି ପ୍ରତାପସିଂହ କହିଲେ, "ଭାଇମାନେ, ସ୍ୱାଧୀନତା-ଯଜ୍ଞରେ ଜୀବନାହୁତି ଦେବାର ସମୟ ଉପସ୍ଥିତ ହୋଇଅଛି । ମେବାଡ଼-ଲକ୍ଷ୍ମୀଙ୍କ ମସ୍ତକରୁ ସ୍ୱାଧୀନତା-କିରୀଟ ଅପହରଣ କରିବାନିମନ୍ତେ ଯବନ ବିପୁଳ ଆୟୋଜନ କରୁଅଛି ।

ବର୍ତ୍ତମାନ କର୍ତ୍ତବ୍ୟାକର୍ତ୍ତବ୍ୟ ସମ୍ବନ୍ଧରେ ଆପଣମାନେ ସ୍ୱାଧୀନଭାବରେ ମତ ବ୍ୟକ୍ତ କଲେ ସୁଖୀ ହେବ ।"

ସର୍ଦ୍ଦାରମାନେ କହିଲେ, "ଆମ୍ଭେମାନେ ଯୁଦ୍ଧ କରିବୁଁ—ଯୁଦ୍ଧକ୍ଷେତ୍ରରେ ପ୍ରାଣ ଦେଇ ଯବନ-ନିପାତ କରିବୁଁ ।"

ପ୍ରତାପସିଂହ କହିଲେ, "ଆପଣମାନେ ମେବାଡ଼ର ପ୍ରକୃତ ସନ୍ତାନ । ଯୁଦ୍ଧ କରିବା ନିମନ୍ତେ ଆପଣମାନଙ୍କ ଆଗ୍ରହ ଅତୀବ ପ୍ରଶଂସନୀୟ । କିନ୍ତୁ ମନେ ରଖିଥାନ୍ତୁ, ଆମ୍ଭେମାନେ ବର୍ତ୍ତମାନ ଜୀବନ ଓ ମରଣର ସନ୍ଧିସ୍ଥଳରେ ଉପସ୍ଥିତ ହୋଇଅଛୁଁ । ଏହି ଯୁଦ୍ଧରେହିଁ ଆମ୍ଭମାନଙ୍କର ଭାଗ୍ୟ ନିରୂପିତ ହେବ । ଭାଗ୍ୟରେ ଥିଲେ ଆମ୍ଭମାନଙ୍କର ସ୍ୱର୍ଗବାସ ହେବ—ନୋହିଲେ ପରାଧୀନତାର ନାରକୀୟ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିବ । ଆପଣମାନେ ଏ ଦୁଇଥିରୁ ଗୋଟିଏ ବାଛି ନିଅନ୍ତୁ ।"

ସର୍ଦ୍ଦାରମାନେ ପୂର୍ବବତ୍ ଉତ୍ସାହ ସହକାରେ କହିଲେ, "ଆମ୍ଭେମାନେ ସ୍ୱାଧୀନତା ଚାହୁଁ । ସ୍ୱାଧୀନତା ନିମନ୍ତେ ପ୍ରାଣୋତ୍ସର୍ଗ କରିବାକୁ ମଧ୍ୟ ପ୍ରସ୍ତୁତ ଅଛୁଁ ।"

ପ୍ରତାପସିଂହ ବଜ୍ରଗମ୍ଭୀର ସ୍ୱରରେ କହିଲେ, "ଆପଣମାନଙ୍କଠାରୁ ମୁଁ ଏହି ଉତ୍ତରହିଁ ଆଶା କରୁଥିଲି । କିନ୍ତୁ ମନେ ରଖିଥାନ୍ତୁ ଯେ, ଆମ୍ଭେମାନେ ଅସୀମ ସାହସିକ କାର୍ଯ୍ୟରେ ହସ୍ତକ୍ଷେପ କରୁଅଛୁଁ । ଅକବରଙ୍କ ସାମରିକ ଶକ୍ତି ଅତୁଳନୀୟ । ଆମ୍ଭମାନଙ୍କୁ ସମସ୍ତ ସାମ୍ରାଜ୍ୟର ଶକ୍ତି ବିରୁଦ୍ଧରେ ଛିଡ଼ା ହେବାକୁ ପଡ଼ିବ । ଏ ଯୁଦ୍ଧ ମନୁଷ୍ୟ ମନୁଷ୍ୟ ମଧ୍ୟରେ ନୁହେ—ଏହା ହସ୍ତୀ ସହିତ ବ୍ୟାଘ୍ରର ଯୁଦ୍ଧ । ଯଦି ଆପଣମାନଙ୍କ ହୃଦୟରେ ବଳ ଓ ମାତୃଭୂମିର ଗୌରବରେ ବିଶ୍ୱାସ ଥାଏ, ତାହା ହେଲେ ଆମ୍ଭେମାନେ ଯବନମାନଙ୍କୁ ଅନାୟାସରେ ପଦଦଳିତ କରିପାରିବା । ହୃଦୟର ବଳ ଶାରୀରିକ ବଳର ବାଧା ମାନେନାହିଁ । ଏହା ବଜ୍ରପ୍ରାୟ କଠିନ ଓ

ବହ୍ନୀତସ୍ତ୍ରାସ୍ୟେ ଈଶ୍ୱର । ଯେପରି ଭୂଗର୍ଭସ୍ଥ ଉତ୍ତପ୍ତ ଧାତବ ପଦାର୍ଥ ବିଶାଳ ପୃଥିବୀକୁ ପ୍ରକମ୍ପିତ କରିଥାଏ, ହୃଦୟର ବଳ ସେହିପରି ବଳବାନ୍ ଶତ୍ରୁକୁ ମଧ୍ୟ ବିଧ୍ୱସ୍ତ କରିଥାଏ । ଆମ୍ଭେମାନେ ଧର୍ମ-ପଥର ପଥିକ । ଅପର ଜାତିର ସ୍ୱାଧୀନତା ଅପହରଣ କରିବା ନିମନ୍ତେ ଆମ୍ଭେମାନେ ଯୁଦ୍ଧର ଅୟୋଜନ କରୁ ନାହୁଁ । ମାତୃଭୂମିର ସ୍ୱାଧୀନତା-ରକ୍ଷାହିଁ ଆମ୍ଭମାନଙ୍କର ଏକମାତ୍ର କାମନା । ଏହି କାର୍ଯ୍ୟ ନୃଶଂସ ହେଲେ ହେଁ ଈଶ୍ୱରଙ୍କ ବିଧିର ଅନନୁମୋଦିତ ନୁହେ । ଆମ୍ଭେମାନେ ଜୀବନର ସମସ୍ତ ବାସନା ପରିତ୍ୟାଗ କରିଅଛୁଁ—ମାତୃଭୂମିର ସ୍ୱାଧୀନତା ନିମନ୍ତେ ଦାରିଦ୍ର୍ୟ ବରଣ କରିଅଛୁଁ । ଆମ୍ଭେମାନେ ଅନ୍ୟର ସାମ୍ରାଜ୍ୟ ଲୋଡ଼ୁନାହୁଁ—ଅନ୍ୟର ଧନରେ ଧନୀ ହେବାକୁ ପ୍ରୟାସ କରୁନାହୁଁ । ଆମ୍ଭେମାନେ ଚାହୁଁ ସ୍ୱଦେଶରେ ସ୍ୱାଧୀନ-ଭାବରେ କାଳଯାପନ କରିବାକୁ । ଆମ୍ଭମାନଙ୍କର ଏହି କାର୍ଯ୍ୟ ଯଦି ଯବନର ଚକ୍ଷୁଃଶୂଳ ହୁଏ, ତାହାହେଲେ ଯୁଦ୍ଧ ବିନା ଆମ୍ଭମାନଙ୍କର ଗତ୍ୟନ୍ତର ନାହିଁ । ଏଥିରେ ଅବଶ୍ୟ ନରହତ୍ୟା ହେବ—ନରଶୋଣିତରେ ପୃଥିବୀର ବକ୍ଷ ପ୍ଲାବିତ ହେବ । କିନ୍ତୁ ସେଥିପାଇଁ ଆମ୍ଭମାନଙ୍କର ଅଣୁମାତ୍ର ଚିନ୍ତା ନାହିଁ । ଆମ୍ଭେମାନେ ଶତ୍ରୁର ଶୋଣିତରେ ମାତୃଭୂମିର ଚରଣା-ରବିନ୍ଦକୁ ଅଳକ୍ତକରଞ୍ଜିତ କରିବୁଁ । ଏହି ଧର୍ମଯୁଦ୍ଧରେ ଈଶ୍ୱର ନିଶ୍ଚୟ ଆମ୍ଭମାନଙ୍କର ସହାୟ ହେବେ । ଆମ୍ଭେମାନେ ଯୁଦ୍ଧକ୍ଷେତ୍ରରେ ଈଶ୍ୱରଙ୍କ ବଳରେ ବଳୀୟାନ ହୋଇ ଯୁଦ୍ଧ କରିବୁଁ । ଯଦି ଆପଣମାନେ ସମସ୍ତେ ମରିବାକୁ ପ୍ରସ୍ତୁତ ଅଛନ୍ତି, ତାହାହେଲେ ଯବନର ସାଧ୍ୟ ନାହିଁ ଯେ, ସେ ମେବାଡ଼ର ସ୍ୱାଧୀନତା ଅପହରଣ କରିପାରିବ । ଆଜି ସମସ୍ତେ ଭଗବାନ୍ ଏକଲିଙ୍ଗଙ୍କ ସମକ୍ଷରେ ଶପଥ କରି କହନ୍ତୁ ଯେ, ଆପଣମାନଙ୍କ ଧମନୀରେ ରକ୍ତ ପ୍ରବାହିତ ହେଉଥିବା ପର୍ଯ୍ୟନ୍ତ ମେବାଡ଼-ଲକ୍ଷ୍ମୀଙ୍କ ସ୍ୱାଧୀନତା ଅକ୍ଷୁଣ୍ଣ ରହିବ ।"

ସର୍ଦ୍ଦାରମାନେ ଉତ୍ତର କଲେ, "ଆମ୍ଭେମାନେ ଯୁଦ୍ଧରେ ମରିବୁଁ; କିନ୍ତୁ ସ୍ୱାଧୀନତା ଛାଡ଼ିବୁଁ ନାହିଁ ।"

ସେମାନଙ୍କ ପ୍ରତିଜ୍ଞା-ବାକ୍ୟ ଶୁଣି ପ୍ରତାପସିଂହ ଆଶ୍ୱସ୍ତ ହେଲେ । ତାଙ୍କ ଆନନ-କମଳରେ ଆନନ୍ଦ ଓ ଉତ୍ସାହର ବିମଳ ରେଖା ଉଦ୍ଭାସିତ ହେଲା । ସମସ୍ତେ ଭଗବାନ୍ ଏକଲିଙ୍ଗଙ୍କୁ ପ୍ରଣାମ କରି "ଜୟ ମେବାଡ଼ର ଜୟ" "ଜୟ ମହାରାଣାଙ୍କ ଜୟ" ଶବ୍ଦ ଉଚ୍ଚାରଣ ପୂର୍ବକ ସେଠାରୁ ପ୍ରସ୍ଥାନ କଲେ ।

ପୂର୍ବେ ବର୍ଣ୍ଣିତ ହୋଇଅଛି ଯେ, ଯୁଦ୍ଧର ପ୍ରାଥମିକ ଆୟୋଜନଗୁଡ଼ିକ ଏଥି ପୂର୍ବରୁ ଅନୁଷ୍ଠିତ ହୋଇଥିଲା । ଏଣୁକରି ସୈନ୍ୟସଂଗ୍ରହ ପ୍ରଭୃତି କାର୍ଯ୍ୟରେ ପ୍ରତାପଙ୍କୁ ଆଦୌ ଅସୁବିଧା ଭୋଗ କରିବାକୁ ପଡ଼ି ନ ଥିଲା । ମେବାଡ଼ରେ ଏପରି କୌଣସି ପ୍ରଜା ନ ଥିଲା, ଯେ ଯବନ-ଯୁଦ୍ଧରେ ନିଜର ସର୍ବସ୍ୱ ଦେବାକୁ କୁଣ୍ଠିତ ଥିଲା । ରାଣା ପ୍ରତାପସିଂହ ଅତିଶୀଘ୍ର ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହୋଇ ମୋଗଲମାନଙ୍କ ପ୍ରତୀକ୍ଷାରେ ରହିଲେ ।



## ନବମ ପରିଚ୍ଛେଦ



## ହଲଦୀଘାଟ ଯୁଦ୍ଧ ।

ମେବାଡ଼ ପର୍ବତବହୁଳ ପ୍ରଦେଶ । ଗୁପ୍ତ ପଥ ସମ୍ବନ୍ଧରେ ଅଭିଜ୍ଞତା ଲାଭ ନ କରି କେହି ଉକ୍ତ ପ୍ରଦେଶରେ ପ୍ରବେଶ କରିନପାରେ । ପର୍ବତ-ଗୁହାରେ ଏପରି ସ୍ଥାନମାନ ଅଛି ଯେ, ରାଜପୁତମାନେ ସେଠାରେ ନିରାତଙ୍କଭାବରେ ଲୁକ୍କାୟିତ ରହି ଆକ୍ରମଣକାରୀ ସେନାଙ୍କୁ ଅତର୍କିତ ଭାବରେ ପରାସ୍ତ କରିପାରନ୍ତି । ମାନସିଂହ ନିଜେ ରାଜପୁତ ଥିବାରୁ ମେବାଡ଼ର ଦୁରଧିଗମ୍ୟତା ସମ୍ବନ୍ଧରେ ଅନଭିଜ୍ଞ ନ ଥିଲେ । ଏଣୁକରି ମୋଗଲ-ବାହିନୀ ଶତ୍ରୁ-ଦେଶର ନିକଟବର୍ତ୍ତୀ ହେଲେ ସୁଦ୍ଧା ରାଜପୁତ ସୈନିକମାନଙ୍କ ସମ୍ମୁଖୀନ ନ ହୋଇ ଅଦୂରରେ ଅପେକ୍ଷା କରିବାକୁ ମାନସିଂହଙ୍କ ଦ୍ୱାରା ଆଦିଷ୍ଟ ହୋଇଥିଲା ।

କିନ୍ତୁ ସେଲିମ୍ ଯେ ଏ ଯୁଦ୍ଧରେ ସେନାପତି । ଶତ୍ରୁଙ୍କୁ ଆକ୍ରମଣ ନ କରି କାଳବିଳମ୍ବ କରିବା ତାଙ୍କ ମତରେ ସମ୍ପୂର୍ଣ୍ଣ ଅପବ୍ୟବହାର ଛଡ଼ା କିଛି ନ ଥିଲା । ପୁଣି ସେନାଧ୍ୟକ୍ଷମାନେ ତାଙ୍କ କଥା ନ ମାନି ଜଣେ ଅଧୀନସ୍ଥ କର୍ମଚାରୀର ଆଦେଶ ଅନୁସାରେ କାର୍ଯ୍ୟ କରୁଥିଲେ । ଏହା ମୋଗଲ-ସେନାପତି ଓ ସାମ୍ରାଜ୍ୟର ଉତ୍ତରାଧିକାରୀଙ୍କ ପକ୍ଷରେ କମ୍ ଲଜ୍ଜାର ବିଷୟ ନୁହେ । କିନ୍ତୁ କରିବେ କଣ ? ସମ୍ରାଟଙ୍କ ଆଦେଶ ଯେ, ମାନସିଂହ ସେନାପତି ନ ହେଲେ ସୁଦ୍ଧା ତାଙ୍କ ଆଦେଶାନୁସାରେ ସମସ୍ତ କାର୍ଯ୍ୟ ସମାହିତ ହେବ । ସେଲିମ୍ ନାମମାତ୍ର ସେନାପତି ହୋଇ

ସାକ୍ଷୀଗୋପାଳପରି ସବୁ ଦେଖୁଥିବେ ! ଯୁବରାଜ କ୍ରୋଧରେ ପ୍ରକମ୍ପିତ ହେବାକୁ ଲାଗିଲେ । କିନ୍ତୁ ପିତୃବ୍ୟବସ୍ଥା ବିରୁଦ୍ଧରେ ଛିଡ଼ା ହେବାକୁ ତାହାଙ୍କର ଶକ୍ତି ନ ଥିବାରୁ ଅଗତ୍ୟା ତୁନ ହୋଇ ରହିଲେ ।

ସମ୍ରାଟ ଯେ ଦିନକୁ ଦିନ ରାଜପୁତମାନଙ୍କୁ ବେଶି ପ୍ରଶ୍ରୟ ଦେଉଛନ୍ତି; ଏ କଥା ବୁଝିବାକୁ ସେଲିମଙ୍କୁ ବେଶି ସମୟ ଲାଗିଲା ନାହିଁ । ଅବିରତ କାଫେରମାନଙ୍କ ସହିତ ପରିଣୟ-ସଂପର୍କ ରଖିଲେ, ସେମାନଙ୍କୁ ସାମ୍ରାଜ୍ୟର ଉଚ୍ଚ ପଦଗୁଡ଼ିକ ପ୍ରଦାନ କଲେ । ମହାଭାରତ-ସାମ୍ରାଜ୍ୟ ସ୍ଥାପନ କରିବାକୁ ଯାଇ ସେ କ୍ରମଶଃ ହିନ୍ଦୁମାନଙ୍କୁ ମୁସଲମାନ-ମାନଙ୍କ ଉପରେ ଆଧିପତ୍ୟ ପ୍ରଦାନ କରୁଅଛନ୍ତି । ଯେପରି ଦେଖା ଯାଉଅଛି, ଅଳ୍ପଦିନ ମଧ୍ୟରେ ମୋଗଲ-ସାମ୍ରାଜ୍ୟ ହିନ୍ଦୁସାମ୍ରାଜ୍ୟରେ ପରିଣତ ହୋଇଯିବ । ସେଲିମ୍ ନିଜେ ଖାଣ୍ଟି ମୁସଲମାନ ହୋଇ କିପରି ଏହା ସହି ରହିବେ—ସେ ଜାଣି ଶୁଣି କିପରି ହିନ୍ଦୁମାନଙ୍କ ହସ୍ତକୁ ସାମ୍ରାଜ୍ୟଟି ବଢାଇଦେବେ ?

ମୁହୂର୍ତ୍ତି ମଧ୍ୟରେ ସେଲିମଙ୍କ ମନୋଗତ ଭାବ ମାନସିଂହଙ୍କ କର୍ଣ୍ଣଗୋଚର ହେଲା । ଏକାଧିକନାୟକତ୍ୱର ବିଷମୟ ଫଳ ଫଳିବାକୁ ଆଉ ବେଶି ବିଳମ୍ବ ହେଲାନାହିଁ । ସେ ଏବେ ବୁଝିପାରିଲେ ଯେ, ହିନ୍ଦୁମୁସଲମାନ-ଏକତା ଆକାଶ-କୁସୁମ ଛଡ଼ା କିଛି ନୁହେ । କିନ୍ତୁ ଉପସ୍ଥିତ କ୍ଷେତ୍ରରେ କଳହ କରିବା ରଣ-ନୀତି-ବିରୁଦ୍ଧ । ଏଣୁକରି ସେ ମନକଥା ମନରେ ରଖି ଯୁଦ୍ଧ-କାର୍ଯ୍ୟରେ ପ୍ରବୃତ୍ତ ରହିଲେ । ଏହି ସାମାନ୍ୟ ଘଟନା ନେଇ ସେମାନଙ୍କ ମନରେ ଯେଉଁ ମନୋମାଳିନ୍ୟ-ବୀଜ ବପିତ ହେଲା, ତାହା ପରେ ଅଙ୍କୁରିତ ଓ ଶାଖାପ୍ରଶାଖାଯୁକ୍ତ ହୋଇ ମୋଗଲ-ସାମ୍ରାଜ୍ୟକୁ ଛାରଖାର କରିବାକୁ ଉପକ୍ରମ କରିଥିଲା । ସେ ବିଷୟ ପରେ ଆଲୋଚିତ ହେବ ।

ମେବାଡ଼-ପର୍ବତଗୁହାକର ଗୁପ୍ତପଥାନୁସନ୍ଧାନ କରିବା ନିମନ୍ତେ ମାନସିଂହ ଚରଅଗ୍ରଙ୍କୁ ଲୋକ ପଠାଇଲେ ମଧ୍ୟ କୃତକାର୍ଯ୍ୟ ହୋଇପାରି-ନ ଥିଲେ । ଅଧିକାଂଶ ଚର ପର୍ବତଗୁହାକର ଦୁରଧିଗମ୍ୟତା ଭେଦ କରି-ପାରୁ ନ ଥିଲେ; ଯଦି କେହି ପାରୁଥିଲା, ତାହାହେଲେ ସେ ବହିର୍ଗମନର ଉପାୟ ନ ଜାଣି ସେହି ଅଡ଼େ ରହି ଯାଉଥିଲା । ମାନସିଂହ ଏ ସବୁ ଦେଖି ହତବୁଦ୍ଧି ହୋଇ ବସି ରହିଲେ । ଶକ୍ତସିଂହ ଏ ବିଷୟରେ ତାଙ୍କୁ ସାହାଯ୍ୟ କରି ନ ଥିଲେ ମୋଗଲମାନେ ଯୁଗବ୍ୟାପୀ କାଳ ଚେଷ୍ଟା କରି ମଧ୍ୟ ଗୁପ୍ତପଥାବିଷ୍କାରରେ ସଫଳକାମ ହୋଇପାରି ନ ଥାନ୍ତେ । ମେବାଡ଼ର ଦୁର୍ଭାଗ୍ୟକ୍ରମେ ମେବାଡ଼ର ସନ୍ତାନ ଶକ୍ତସିଂହ ଏହି ଜଘନ୍ୟ କାର୍ଯ୍ୟ କରିବାକୁ ପ୍ରବର୍ତ୍ତ ହେଲେ । ସେ କତିପୟ ଅନୁଚରଙ୍କୁ ସଙ୍ଗରେ ନେଇ ଛଦ୍ମବେଶରେ ପ୍ରତାପସିଂହଙ୍କ ସୈନିକମାନଙ୍କ ଅବସ୍ଥାନ ସନ୍ଧାନ କରି ଆସିଲେ ଏବଂ ମାନସିଂହଙ୍କ ନିକଟରେ ସକଳ ବିଷୟ ଜ୍ଞାପନ କଲେ ।

ସମରାଭିଯାନର ଅନିଶ୍ଚିତତା ହୃଦୟଙ୍ଗମ କରି ମୋଗଲ ସୈନିକମାନେ ନିଶ୍ଚିନ୍ତ ମନରେ କାଳକ୍ଷେପ କରୁଥିଲେ । ଆମୋଦପ୍ରିୟ ସେଲିମଙ୍କ ଶିବିରରେ ନୃତ୍ୟଗୀତ ଓ ସୁରାପାନ ଅବାଧଗତିରେ ଚାଲିଥିଲା । ହଠାତ୍ ଅକସ୍ମାତ୍ ସମ୍ବାଦ ପ୍ରଚାରିତ ହେଲା ଯେ, ମାନସିଂହଙ୍କ ଆଦେଶାନୁସାରେ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହେବାକୁ ପଡ଼ିବ । ମୁହୂର୍ତ୍ତ ମଧ୍ୟରେ ସକଳ ଆମୋଦ ପ୍ରମୋଦ ବନ୍ଦ ହୋଇଗଲା । ସୈନିକମାନଙ୍କ ମଧ୍ୟରେ ସମରାୟୋଜନର ଧୂମଧାମ ଲାଗିଗଲା । କେହି ସେଲିମଙ୍କ ଆଦେଶର ଅପେକ୍ଷା ମଧ୍ୟ କଲେ ନାହିଁ । ଏହା ଦେଖି ଯୁବରାଜଙ୍କ ମନରେ ଭୀଷଣ କ୍ରୋଧ ଜାତ ହେଲା । ଈର୍ଷା-ଜନିତ ତୀବ୍ର ଜ୍ୱାଳା ତାହାଙ୍କର ସମସ୍ତ ଶରୀରକୁ ଘାରି ପକାଇଲା । ଯୁଦ୍ଧପରେ ମାନସିଂହଙ୍କୁ ବହୁତ ଶାସ୍ତି ଦେବାକୁ ସ୍ଥିର କରି ସେ ମଧ୍ୟ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହେଲେ ।

ଶକ୍ତିସିଂହଙ୍କଦ୍ୱାରା ପ୍ରଦର୍ଶିତ ପଥରେ ଯାଇ ମୋଗଲ-ବାହିନୀ ଅନତିବିଳମ୍ବେ ରାଜପୁତ-ସେନାର ନିକଟବର୍ତ୍ତୀ ହେଲା । ପ୍ରତାପସିଂହ କ୍ଷୁଧିତ ସିଂହପ୍ରାୟେ ଅରଣ୍ୟମଧ୍ୟରେ ଲୁକ୍କାୟିତ ଥିଲେ । ମୋଗଲମାନଙ୍କୁ ସମୀପବର୍ତ୍ତୀ ହେବାର ଦେଖି ସେ ଆଉ ସ୍ଥିର ହୋଇ ରହିପାରିଲେନାହିଁ । ମେବାଡ଼ର ସୈନିକମାନେ ଭୀଷଣ ଗର୍ଜନସହକାରେ ମୋଗଲମାନଙ୍କ ଉପରେ ନିପତିତ ହେଲେ । ତତ୍କ୍ଷଣାତ ହଳଦୀଘାଟ ଯୁଦ୍ଧ-କ୍ଷେତ୍ରରେ ମେବାଡ଼ ଓ ମୋଗଲ ମଧ୍ୟରେ ଭୀଷଣ ସଂଗ୍ରାମ ଆରମ୍ଭ ହେଲା ।

ମେବାଡ଼ର ସୈନିକସଂଖ୍ୟା ବିଂଶତି ସହସ୍ରମାତ୍ର ହେଲେ ମଧ୍ୟ ପ୍ରତାପ-ସିଂହ ଅଦମ୍ୟ ଉତ୍ସାହସହକାରେ ବିଶାଳ ମୋଗଲବାହିନୀ ସହିତ ଯୁଦ୍ଧ କରିବାକୁ ଲାଗିଲେ । ରାଜପୁତ ବୀରମାନଙ୍କ ପ୍ରଚଣ୍ଡ ବିକ୍ରମ ସହ୍ୟ ନ ପାରି ମୋଗଲମାନେ ପ୍ରମାଦ ଗଣିବାକୁ ଲାଗିଲେ । ପ୍ରତାପସିଂହ କତି-ପୟ ବିଶ୍ୱସ୍ତ ସୈନିକମାନଙ୍କ ସମଭିବ୍ୟାହାରରେ ମୋଗଲ ବ୍ୟୂହ ଭେଦ-କରି ସେଲିମ୍‌ଙ୍କ ଅଭିମୁଖରେ ଉପସ୍ଥିତ ହେଲେ । ଯେ ତାହାଙ୍କର ସମ୍ମୁ-ଖୀନ ହେଉଥିଲା, ସେ ତାଙ୍କ ହସ୍ତରୁ ଆଉ ନିସ୍ତାର ପାଉ ନ ଥିଲା । ତାହାଙ୍କର ବିକ୍ରମ ଓ ତେଜ ଦେଖି ମୋଗଲ ସୈନିକମାନେ ଇତସ୍ତତଃ ହୋଇଗଲେ । ପ୍ରତାପସିଂହଙ୍କ ପଥ ନିଷ୍କଣ୍ଟକ ହେଲା ।

ଯେଉଁ ସମୟର କଥା ବର୍ଣ୍ଣିତ ହେଉଅଛି, ସେସମୟରେ ସେନାପତି ହିଁ ଯୁଦ୍ଧର ସର୍ବେସର୍ବା ଥିଲେ । ଯୁଦ୍ଧରେ ଜୟପରାଜୟ ଅନେକ ସମୟରେ ତାଙ୍କ ଜୀବନଉପରେ ନିର୍ଭର କରୁଥିଲା । ତାଙ୍କ ବିନାଶ-ସମ୍ବାଦଶ୍ରବଣ ମାତ୍ରେ ସୈନିକମାନେ ଛତ୍ରଭଙ୍ଗ ହେଉଥିଲେ । ଏଣୁକରି ପ୍ରତ୍ୟେକ ପକ୍ଷ ଅପର ପକ୍ଷର ସେନାପତିଙ୍କ ପ୍ରାଣବିନାଶକୁ ସର୍ବପ୍ରଥମ କର୍ତ୍ତବ୍ୟ ମନେ କରୁଥିଲେ ।

ଯୁବରାଜ ସେଲିମ୍ ମୋଗଲମାନଙ୍କ ଚମୂପତି ଥିଲେ । ସେ ଜୀବିତ ଥିବାପର୍ଯ୍ୟନ୍ତ ମୋଗଲମାନଙ୍କ ପରାଜୟ ଅସମ୍ଭବ ଥିଲା । ଏଣୁକରି ପ୍ରତାପ-

ସିଂହ ଅନ୍ୟ କୌଣସି ଅସ୍ତ୍ରେ ଲକ୍ଷ୍ୟ ନ କରି ପ୍ରଥମେ ସେଲିମ୍‌ଙ୍କ ଅଭିମୁଖରେ ଧାବିତ ହେଲେ । ସେଲିମ୍ ପ୍ରକାଣ୍ଡ ଗଜୋପରି ଆରୂଢ଼ ହୋଇ ଯୁଦ୍ଧ କରୁଥିଲେ । ତାହାଙ୍କର ମସ୍ତକୋପରି ହସ୍ତୀର ରାଜଛତ୍ର ଉତ୍ତୋଳିତ ହୋଇଥିଲା । ପ୍ରତାପସିଂହଙ୍କ ବିଶ୍ୱସ୍ତ ଘୋଟକ ଚୈତକ ସ୍ୱାମିଙ୍କୁ ପୃଷ୍ଠରେ ଧାରଣକରି ସେଲିମଙ୍କ ହସ୍ତିର ନିକଟବର୍ତ୍ତୀ ହେଲା ଏବଂ ତୀବ୍ରବେଗରେ ପଛଗୋଡ଼ ଉପରେ ଛିଡ଼ା ହୋଇ ଆଗ ଗୋଡ଼ ଦୁଇଟି ସେଲିମଙ୍କ ହସ୍ତି-ଉପରେ ନ୍ୟସ୍ତ କଲା । ପ୍ରତାପସିଂହ ତନ୍ମୁହୂର୍ତ୍ତରେ ସେଲିମଙ୍କୁ ଲକ୍ଷ୍ୟକରି ବର୍ଚ୍ଛା ନିକ୍ଷେପକଲେ; କିନ୍ତୁ ସେଲିମ୍‌ଙ୍କ ସୌଭାଗ୍ୟବଶତଃ ଠିକ୍ ସେହି ସମୟରେ ତାଙ୍କ ହସ୍ତୀ ଚମକ ପଡ଼ିବାରୁ ପ୍ରତାପସିଂହଙ୍କ ଲକ୍ଷ୍ୟ ବ୍ୟର୍ଥ ହେଲା । ଏବଂ ବର୍ଚ୍ଛା ଯାଇ ମାହୁନ୍ତର ଦେହଉପରେ ପଡ଼ିଲା । ଏହି ଘଟନାରେ ମୋଗଲମାନଙ୍କ ଭାଗ୍ୟାକାଶ ମେଘନିର୍ମୁକ୍ତ ହୋଇ ଉଜ୍ଜ୍ୱଳ ସୂର୍ଯ୍ୟ କିରଣରେ ଉଦ୍ଭାସିତ ହେଲା ଏବଂ ରାଜପୁତମାନେ ନୈରାଶ୍ୟ-ସାଗରର ଅତଳ ଜଳରେ ନିକ୍ଷିପ୍ତ ହେଲେ । ନୋହିଲେ ଭାରତବର୍ଷରୁ ମୋଗଲଶକ୍ତି ଏକାବେଳକେ ବିଲୁପ୍ତ ହୋଇଯାଇଥାନ୍ତା ଏବଂ ପ୍ରତାପସିଂହଙ୍କ ଅଧିନାୟକତ୍ୱରେ ହିନ୍ଦୁ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥାନ୍ତା । କିନ୍ତୁ ବିଧାତାଙ୍କ ଇଚ୍ଛା ବିରୁଦ୍ଧରେ କିଏ ଛିଡ଼ା ହୋଇପାରେ ?

ସେନାପତିଙ୍କ ଜୀବନକୁ ସଙ୍କଟାପନ୍ନ ଦେଖି ମୋଗଲମାନେ ଅତିଶୀଘ୍ର ପ୍ରତାପସିଂହଙ୍କୁ ଘେରିପକାଇଲେ । ମେବାଡ଼ର ସୈନିକମାନେ ସେମାନଙ୍କୁ ଭେଦକରି ରାଣାଙ୍କ ନିକଟକୁ ଯାଇପାରିଲେ ନାହିଁ । ପ୍ରତାପସିଂହ ବିଷମ ସମସ୍ୟାରେ ପଡ଼ିଲେ । ସଙ୍ଗେ ମୁଷ୍ଟିମେୟ ସୈନିକ ଅଛନ୍ତି । ଅବଶ୍ୟ ସେମାନେ ପ୍ରାଣକୁ ଭୟ କରନ୍ତି ନାହିଁ । କିନ୍ତୁ ମୋଗଲମାନଙ୍କ ଆକ୍ରମଣକୁ ବ୍ୟର୍ଥ କରିବାକୁ ସେମାନଙ୍କର ଶକ୍ତି କାହିଁ ? ମୋଗଲମାନେ ପ୍ରତାପଙ୍କୁ ଲକ୍ଷ୍ୟକରି ଚତୁର୍ଦ୍ଦିଗରୁ ଶରନିକ୍ଷେପ କରିବାକୁ ଲାଗିଲେ; କିନ୍ତୁ ପ୍ରତାପସିଂହ

ଅମିତ ପରାକ୍ରମସହକାରେ ସେମାନଙ୍କ ଆକ୍ରମଣର ବ୍ୟର୍ଥତା ସଂପାଦନ କଲେ । ବର୍ତ୍ତମାନ ପ୍ରାଣପ୍ରତି ତାହାଙ୍କର ଅଣୁମାତ୍ର ମମତା ନାହିଁ । ଶତ୍ରୁର କବଳରୁ ରକ୍ଷା ପାଇବା ଅସମ୍ଭବ ବୋଧହେଲେ ମଧ୍ୟ ମରଣକୁ ଭୟଙ୍କର ଭାବି ଦୋଇ ରହିବା ବୀରର କାର୍ଯ୍ୟ ନୁହେ । ଯଦି ମରଣ ହିଁ ଯୁଦ୍ଧର ଚରମ ପରିଣତି, ତାହାହେଲେ ସ୍ୱାଧୀନଭାବରେ ମୃତ୍ୟୁମୁଖରେ ପତିତ ହେବା ଶ୍ରେୟସ୍କର

ଆଜି ପ୍ରତାପସିଂହଙ୍କ ଉତ୍ସାହ ଓ ତେଜ ଦେଖି ସମସ୍ତେ ଅବାକ୍ ହେଉଅଛନ୍ତି । ସେ ଏକାକୀ ଶତଶତ ଯୋଦ୍ଧାର କାର୍ଯ୍ୟ କରୁଅଛନ୍ତି । ତାହାଙ୍କର ଅସ୍ତ୍ରାଘାତରେ ଅସଂଖ୍ୟ ଶତ୍ରୁସୈନିକ ଧରାଶାୟୀ ହେଉଅଛନ୍ତି । ତାଙ୍କ ଅନୁଚରମାନେ ମଧ୍ୟ ତାଙ୍କପରି ପରାକ୍ରମଶାଳୀ । ଆଜି ଜୀବନ ସେମାନଙ୍କ ନିକଟରେ କ୍ରୀଡ଼ାର ସାମଗ୍ରୀ । ଶତ୍ରୁର ଆକ୍ରମଣ ପ୍ରତି ଲକ୍ଷ୍ୟ ନ ରଖି ସେମାନେ ମଧ୍ୟ ଶତ୍ରୁ ନିପାତ କରୁଅଛନ୍ତି । କିନ୍ତୁ ସାମାନ୍ୟ ବାଲିବନ୍ଧ କେତେ କାଳ ଖରସ୍ରୋତା ନଦୀର ଗତିକୁ ଅଟକାଇ ରଖିପାରେ ? ରାଜପୁତମାନେ ଶତ୍ରୁ ମାରି ନିଜେ ମରିବାକୁ ଲାଗିଲେ । ଦେଖୁଁ ଦେଖୁଁ ପ୍ରତାପସିଂହ ରଣାଙ୍ଗନରେ ଏକାକୀ ହୋଇଗଲେ । ତଥାପି ତାଙ୍କ ମନରେ ଭୟ କମ୍ପ କିମ୍ବା ନୈରାଶ୍ୟ ନାହିଁ । ମୋଗଲମାନଙ୍କ ଆକ୍ରମଣରେ ତାହାଙ୍କର ସର୍ବାଙ୍ଗଶରୀର ଅବଶ ହୋଇଗଲା । ଆହତ ସ୍ଥାନଗୁଡ଼ିକରୁ ପ୍ରବଳବେଗରେ ରକ୍ତ ପ୍ରବାହିତ ହେଲା । ମୋଗଲମାନେ ପ୍ରଚଣ୍ଡ ଦାବାନଳପ୍ରାୟେ ତାଙ୍କ ଉପରେ ନିପତିତ ହେଲେ ।

ଝାଲାପତି ମାନା ଅଦୂରେ ଥାଇ ପ୍ରତାପସିଂହଙ୍କ ଦୁର୍ଦ୍ଦଶା ଦେଖିବାକୁ ପାଇଲେ । ମୋଗଲମାନଙ୍କର ଆଉ କୌଣସି ଆଡ଼େ ଲକ୍ଷ୍ୟ ନାହିଁ । ସମସ୍ତେ ମେବାଡ଼ର ମହାରାଣାଙ୍କ ଅଭିମୁଖରେ ଧାବିତ ହେଉଛନ୍ତି । ଆଉ କ୍ଷଣକାଳ ବିଳମ୍ବ ହେଲେ ପ୍ରତାପସିଂହ ଶତ୍ରୁହସ୍ତରେ ନିଧନପ୍ରାପ୍ତ ହେବେ ।

ମାନ୍ଧା ଅଉ ସ୍ଥିର ହୋଇ ରହିପାରିଲେନାହିଁ । ସହସ୍ର ମାନ୍ଧା ମଲେ ସୁଦ୍ଧା ମେବାଡ଼ର କିଛି କ୍ଷତି ହେବନାହିଁ; କିନ୍ତୁ ଏକମାତ୍ର ପ୍ରତାପଙ୍କ ମୃତ୍ୟୁ ସ୍ୱଦେଶର ସ୍ୱାଧୀନତା ସୂର୍ଯ୍ୟକୁ ଚିରକାଳ ନିମନ୍ତେ ଅସ୍ତମିତ କରିବ । ଏଣୁ-କରି ଦେଶଭକ୍ତ ଓ ପ୍ରଭୁଭକ୍ତ ମାନ୍ଧା ସ୍ୱୀୟ ଅନୁଚରମାନଙ୍କୁ ସଙ୍ଗରେ ନେଇ ମୃତ୍ୟୁମୁଖକୁ ଧାବିତ ହେଲେ । ମାର୍ଗରେ ଅସଂଖ୍ୟ ମୋଗଲ୍ ସୈନିକ ନିହତ କରି ସେ ପ୍ରତାପଙ୍କ ନିକଟରେ ଉପନୀତ ହେଲେ ଏବଂ ରାଣାଙ୍କ ରାଜଛତ୍ର ଆଣି ସ୍ୱୀୟ ମସ୍ତକୋପରି ଉତ୍ତୋଳନ କଲେ । ମୋଗଲମାନେ ତାଙ୍କୁ ମେବାଡ଼ର ରାଣା ଭାବି ପ୍ରତାପଙ୍କୁ ଛାଡ଼ି ତାଙ୍କୁ ଆକ୍ରମଣ କରିବାକୁ ଲାଗିଲେ । ମାନ୍ଧାଙ୍କ ମୁଖକମଳ ଆନନ୍ଦର ହାସ୍ୟ ଆଲୋକରେ ଉଦ୍ଭାସିତ ହେଲା । ସେ ଅଦମ୍ୟ ଉତ୍ସାହ ସହକାରେ ଶତ୍ରୁବିନାଶ କରି ବିମଳ ସୁଖ ଉପଭୋଗ କରିବାକୁ ଲାଗିଲେ । ତାଙ୍କ ଆକ୍ରମଣରେ ଶତ୍ରୁ-ସେନା ଛିନ୍ନ-ଭିନ୍ନ ହୋଇଗଲା । ମୋଗଲ ସୈନିକମାନେ ଇତସ୍ତତଃ ପଳାୟନ କରି-ବାକୁ ଲାଗିଲେ । କିନ୍ତୁ ପରମୁହୂର୍ତ୍ତରେ ପଳାୟିତ ସୈନିକମାନଙ୍କ ସ୍ଥାନ ନୂତନ ସୈନିକମାନଙ୍କ ଦ୍ୱାରା ପୂର୍ଣ୍ଣ ହେଲା । ମାନ୍ଧା ଆନନ୍ଦରେ ହସିହସି ସେମାନଙ୍କ ସହିତରେ ଯୁଦ୍ଧ କଲେ । କ୍ରମେ ରଣଶ୍ରାନ୍ତ ହୋଇ ସେ ଅବଶ ହୋଇ ପଡ଼ିଲେ । ଅସଂଖ୍ୟ ମୋଗଲାସ୍ତ୍ର ଏକସମୟରେ ତାଙ୍କ ଉପରେ ନିପତିତ ହେଲା । ତାହାଙ୍କର ସ୍ୱାଧୀନ ଜୀବନ ଚିରକାଳ ନିମନ୍ତେ ଭବ-ରଙ୍ଗଭୂମିରୁ ବିଦାୟ ନେଲା । କିନ୍ତୁ ସେ ସ୍ୱାର୍ଥତ୍ୟାଗ, ପ୍ରଭୁଭକ୍ତି ଓ ସ୍ୱଦେଶାନୁରାଗର ଯେଉଁ ଉଜ୍ଜ୍ୱଳ ଦୃଷ୍ଟାନ୍ତ ଦେଖାଇଅଛନ୍ତି, ତାହା ଯାବଚ୍ଚନ୍ଦ୍ରାର୍କେ ତାଙ୍କୁ ଅମର କରି ରଖିବ ।

ଇତ୍ୟବସରରେ ପ୍ରତାପସିଂହଙ୍କ ଘୋଟକ ଚୈତକ ସ୍ୱାମୀଙ୍କୁ ପୃଷ୍ଠଦେଶେ ଧାରଣ କରି ରଣାଙ୍ଗନରୁ ପଳାୟନ କଲା । କିନ୍ତୁ ପଳାୟନ

କଉ ସୁବା ପ୍ରତାପସିଂହ ନିଷ୍କୃତି ପାଇପାରିଲେ ନାହିଁ । ଦୁଇଜଣ ମୋଗଲ ଅଶ୍ୱାରୋହୀ ତାହାଙ୍କର ପଶ୍ଚାଦ୍ଧାବନ କଲେ । ପ୍ରତାପଙ୍କ ଜୀବନ-ପ୍ରଦୀପ କଣ ଏହିଠାରେ ନିର୍ବାପିତ ହେବ ? ଉଜ୍ଜ୍ୱଳଭବ୍ୟତାର ତମିସ୍ର ଗର୍ଭରେ କଣ ପ୍ରବେଶ କରିପାରେ ?



## ଦଶମ ପରିଚ୍ଛେଦ



# ଭ୍ରାତୃ ମିଳନ



ଶକ୍ତସିଂହ ଯୁଦ୍ଧକ୍ଷେତ୍ରକୁ ଆସିଥିଲେ ପ୍ରତିହିଂସା ସାଧନ ନିମନ୍ତେ, କୌଣସି ସ୍ୱାର୍ଥସିଦ୍ଧିର ଉଦ୍ଦେଶ୍ୟରେ ନୁହେ । କିନ୍ତୁ ସେ ଦେଖିଲେ କଣ ? ତାଙ୍କର ଯୋଗେ ମେବାଡ଼ର ସର୍ବନାଶ ହୋଇଅଛି । ମେବାଡ଼ର ସ୍ୱାଧୀନ ରାଣା ଯୁଦ୍ଧରେ ପରାସ୍ତ ହୋଇଅଛନ୍ତି । କିନ୍ତୁ ଏ ପରାଜୟରେ ପୁଣି ରାଣାଙ୍କର ମହନୀୟ ଗୌରବ ବହୁଗୁଣରେ ବୃଦ୍ଧିପ୍ରାପ୍ତ ହୋଇଅଛି । ସ୍ୱଦେଶର ସ୍ୱାଧୀନତାରକ୍ଷା ନିମନ୍ତେ ମେବାଡ଼ବାସୀ ଅକାତରରେ ପ୍ରାଣଦାନ କରି-ଅଛନ୍ତି । ଶତ୍ରୁମୁଖରେ ପୁଣି ମେବାଡ଼ର କୀର୍ତ୍ତିକଳାପ କୀର୍ତ୍ତିତ ହେଉଅଛି ।

ଶକ୍ତସିଂହ ଭାବିଲେ ଏପରି କଲେ—କାହିଁକି ମୋଗଲସଙ୍ଗତ ଯୋଗ ଦେଇ ସ୍ୱଦେଶର ସର୍ବନାଶ କଲେ ? ଜ୍ୟୋତିର୍ବିଦଙ୍କର ଗଣନା ଆଜି ସଫଳ ହୋଇଅଛି । ଶକ୍ତସିଂହଙ୍କୁ ସ୍ୱଦେଶଦ୍ରୋହୀ ବୋଲି ସମସ୍ତେ ଛିଛି କରୁଛନ୍ତି । ଅବଶ୍ୟ ପ୍ରତାପସିଂହ ତାଙ୍କୁ ଅପମାନିତ କରିଛନ୍ତି; କିନ୍ତୁ ମେବାଡ଼ର ରାଣା ତାଙ୍କଠାରେ କି ଦୋଷ କଲେ ? ସେ ବିନା ଦୋଷରେ ସ୍ୱର୍ଗାଦପି ଗରୀୟସୀ ଜନ୍ମଭୂମିର ଚରଣସରୋଜରେ ଦାସତ୍ୱ-ନିଗଡ଼ ପିନ୍ଧାଇ-ବାକୁ ଯବନଙ୍କୁ ଡାକି ଆଣିଛନ୍ତି । ପ୍ରତାପସିଂହଙ୍କ ଦୋଷ ନିମନ୍ତେ ମେବାଡ଼କୁ ଦଣ୍ଡ ଦେବା ଯୁକ୍ତିସିଦ୍ଧ ହୋଇନାହିଁ । ଅଥଚ ପ୍ରତାପ ଅବା କି ଦୋଷ କଲେ ? ବ୍ରହ୍ମହତ୍ୟା-ପାପରେ ଲିପ୍ତ ଶକ୍ତସିଂହଙ୍କୁ ନିର୍ବା-ସିତ କରିନଥିଲେ, ତାହାଙ୍କର କର୍ତ୍ତବ୍ୟରେ ତ୍ରୁଟି ଘଟିଥାନ୍ତା । ଶକ୍ତସିଂହ

ଅର୍ଦ୍ଧରୁ ପ୍ରାନ୍ତ ପର୍ଯ୍ୟନ୍ତ ଘୋଟିଏ ମହାଭ୍ରମ କରୁଅଛନ୍ତି । ସେ ପ୍ରତାପଙ୍କ ଉପରେ ପ୍ରତିଶୋଧ ନେବାକୁ ଯାଇ ନିଜେ ଭୀଷଣ ଭାବରେ ପ୍ରତାରିତ ହୋଇ ଅଛନ୍ତି ।

ଶକ୍ତିସିଂହ ନିଜେ ଅସିହସ୍ତରେ ଯୁଦ୍ଧକ୍ଷେତ୍ରରେ ଛିଡ଼ା ହୋଇ-ନ ଥିଲେ । କାହାରି ପ୍ରାଣ ବିନାଶ କରିବା ତାହାଙ୍କର ଉଦ୍ଦେଶ୍ୟ ନ ଥିଲା । ସେ କେବଳ ବାହାରେ ଥାଇ ଯୁଦ୍ଧର ଗତିବିଧି ଦେଖୁଥିଲେ । ସେ ପ୍ରଥମେ ଭାବିଥିଲେ ଯେ, ପ୍ରତାପସିଂହ ଅତି ସହଜରେ ମୋଗଲମାନଙ୍କ ଦ୍ୱାରା ପରାସ୍ତ ହୋଇଯିବେ । ପରେ ସେ ଜାଣିପାରିଲେ ଯେ, ପ୍ରତାପ-ସିଂହଙ୍କ ପରାକ୍ରମ ଅପରିମେୟ । ସେ ଏକାକୀ ଶତଯୋଦ୍ଧାର କାର୍ଯ୍ୟ କରୁ-ଅଛନ୍ତି । ତାହାଙ୍କର ଅଲୌକିକ ସମରନୈପୁଣ୍ୟଯୋଗେ ମେବାଡ଼ର ମହିମାମୟ ଇତିହାସ ସମଧିକ ଗୌରବାନ୍ୱିତ ହୋଇଅଛି । ସେ ନିଜ ନିଜର ସ୍ୱାର୍ଥ ନିମନ୍ତେ ଯୁଦ୍ଧ କରୁନାହାନ୍ତି । ସେ ଯୁଦ୍ଧ କରୁଛନ୍ତି ସ୍ୱୀୟ ମାତୃକଳ୍ପା ମାତୃଭୂମି ନିମନ୍ତେ, ମାତୃଭୂମିର ସ୍ୱାଧୀନତା ରକ୍ଷା ନିମନ୍ତେ । ଶକ୍ତିସିଂହ ଏକ ଭୂତ ମାତୃଭକ୍ତ ପ୍ରତାପଙ୍କୁ ଛାଡ଼ି ମୋଗଲର ପକ୍ଷ ଆଶ୍ରୟ କରିଛନ୍ତି, ଜାଣିଶୁଣି ଦେଶର ଶତ୍ରୁକୁ ଘରକୁ ଡାକି ଆଣିଛନ୍ତି । ତାହା-ଙ୍କର ଏହି କାର୍ଯ୍ୟ ନିମନ୍ତେ ଲୋକେ ତାଙ୍କୁ କେତେ ନିନ୍ଦା କରୁଛନ୍ତି । ଶକ୍ତିସିଂହ ନିଜର ଏ ଗୁରୁଭାର ମସ୍ତକରେ ବହନ କରି କିପରି ଜନ-ସମାଜରେ ମୁଖ ଦେଖାଇବେ ?

ପ୍ରତାପସିଂହଙ୍କ ଶକ୍ତିର ଯଥେଷ୍ଟ ପରୀକ୍ଷା ହୋଇସାରିଛି । ତାଙ୍କପରି ଆଉ କିଏ ଅକବରଙ୍କ ବିରୁଦ୍ଧରେ ଏପରି ଯୁଦ୍ଧ କରିପାରିବ ? ଶକ୍ତିସିଂହ ପ୍ରତାପଙ୍କ ଅପକର୍ଷ ପ୍ରମାଣିତ କରିବାକୁ ଯାଇ ନିଜେ ଲାଞ୍ଛନା ଭୋଗ କରି-ବାକୁ ବାଧ୍ୟ ହୋଇଅଛନ୍ତି । ହଳଦୀଘାଟ ଯୁଦ୍ଧରେ ପ୍ରତାପଙ୍କ ଯଶୋରାଶି ସମୁଜ୍ଜ୍ୱଳତର ହୋଇଅଛି । କିନ୍ତୁ ଆଜି କାହିଁ—ସବୁ ଶେଷ ହୋଇଅଛି ।

ପ୍ରତାପସିଂହ ସମରପ୍ରାଙ୍ଗଣରୁ ପଳାୟନ କରୁଅଛନ୍ତି । ଶକ୍ତସିଂହ ଅଦୂରର ମଧ୍ୟ ଲକ୍ଷ କରୁଅଛନ୍ତି ଯେ, ଦୁଇଜଣ ମୋଗଲ ଅଶ୍ୱାରୋହୀ ପ୍ରତାପଙ୍କ ପ୍ରାଣ ନେବା ନିମନ୍ତେ ତାଙ୍କ ପଛେ ପଛେ ଗୋଡ଼ାଇଅଛନ୍ତି । ଅଳ୍ପକାଳ ପରେ ମେବାଡ଼ର ରାଣା ନିଶ୍ଚୟ ନିଧନପ୍ରାପ୍ତ ହେବେ । ପ୍ରତାପଙ୍କ ଜୀବନ-ପ୍ରଦୀପର ନିର୍ବାଣ ସଙ୍ଗେ ସଙ୍ଗେ ମେବାଡ଼ର ସ୍ୱାଧୀନତା-କଣ୍ଠ ଯବନର ପଦଦଳିତ ହେବ । ଶକ୍ତସିଂହ କଣ ଏପରି କାଣ୍ଡ ଭୂକ ହୋଇ ଦେଖୁଥିବେ ? ମେବାଡ଼ର ସନ୍ତାନ ପକ୍ଷେ ଏହା ଯେ ଏକାବେଳକେ ଅସମ୍ଭବ । ଏବେ ସୁଦ୍ଧା ପ୍ରତାପଙ୍କ ପ୍ରାଣକୁ ରକ୍ଷା କରି ପାରିଲେ ମେବାଡ଼ର ସ୍ୱାଧୀତା ଅକ୍ଷୁଣ୍ଣ ରହିବ । ଶକ୍ତସିଂହ ପ୍ରତାପଙ୍କ ପରି ଦେବତା ହୋଇନପାରନ୍ତି; କିନ୍ତୁ ସେ ମନୁଷ୍ୟ ତ ! ସେ ମନୁଷ୍ୟ ହୋଇ ଆଉ କେତେକାଳ ପଶୁପରି ଆଚରଣ କରିବେ ?

ଶକ୍ତସିଂହଙ୍କ ନୟନସମକ୍ଷରୁ ମୋହାନ୍ଧକାର ଅପସାରିତ ହେଲା । ବିବେକର-ଶୁଭ୍ର ଆଲୋକରେ ତାହାଙ୍କର କର୍ତ୍ତବ୍ୟପଥ ସମୁଜ୍ଜ୍ୱଳ ହେଲା । ସେ କାଳବିଳମ୍ବ ନ କରି ଅଶ୍ୱପୃଷ୍ଠରେ ମୋଗଲ ଅଶ୍ୱାରୋହିଦ୍ୱୟଙ୍କ ପଶ୍ଚାଦ୍ଧାବନ କଲେ । ତାହାଙ୍କର ବଳବାନ୍ ଘୋଟକ ବିଦ୍ୟୁତ୍-ବେଗରେ ପ୍ରଧାବିତ ହୋଇ ତାଙ୍କୁ ଶୀଘ୍ର ସେମାନଙ୍କ ସମୀପବର୍ତ୍ତୀ କଲା ।

ପ୍ରତାପସିଂହଙ୍କ ବାଧା ନ ମାନି ପ୍ରଭୁଭକ୍ତ ଘୋଟକ ଚୈତକ ରାଣାଙ୍କୁ ସମରକ୍ଷେତ୍ରରୁ ନେଇ ଆସିଥିଲା । ସେ ନିଜେ କ୍ଳାନ୍ତ ହୋଇଥିଲେ ସୁଦ୍ଧା ପ୍ରଭୁଙ୍କ ପ୍ରାଣରକ୍ଷା ନିମନ୍ତେ ନିଜ ପ୍ରାଣକୁ ତୁଚ୍ଛ କରି ପ୍ରବଳ ବେଗରେ ଧାବିତ ହେବାକୁ ଲାଗିଲା । ମୋଗଲ ଅଶ୍ୱାରୋହିଦ୍ୱୟଙ୍କ ଅଶ୍ୱାଦ୍ଧାବନ-ଶବ୍ଦ ଶୁଣି ସେ ବିପଦାଶଙ୍କା ଅନୁମାନ କରୁ ଅଧିକ ବେଗରେ ଧାଇଁବାକୁ ଲାଗିଲା । ତାହାର ଅଲୌକିକ ଗତିଯୋଗେ ପଶ୍ଚାଦ୍ଧାବନକାରୀ ଅଶ୍ୱାରୋହିଦ୍ୱୟ ଅନେକ ପଛରେ ପଡ଼ିଗଲେ । ଅନନ୍ୟଗତିକ ହ୍ରେଷାରବ

କରି ଚୈତନ୍ୟ ପୂର୍ବବତ୍ ଧାବିତ ହେବାକୁ ଲାଗିଲା । ମାର୍ଗରେ ଯାଉଁ ଯାଉଁ ସେମାନେ ଗୋଟିଏ ପର୍ବତ-ସ୍ରୋତସ୍ୱତୀର ସମ୍ମୁଖୀନ ହେଲେ । ଏହିଠାରେ ଚୈତକ ବିଷମ ସମସ୍ୟାରେ ପଡ଼ିଲା । ଯଦି ଗତିର ବେଗ କମ୍ କରି ସେ ସ୍ରୋତସ୍ୱତୀଟିକୁ ଅତିକ୍ରମ କରିବାକୁ ଯାଏ, ତାହାହେଲେ ଶତ୍ରୁମାନେ ନିଶ୍ଚିତ ନିକଟବର୍ତ୍ତୀ ହୋଇଯିବେ । ଏବେ ସେ କରେ କଣ ? ଅଗତ୍ୟା ପ୍ରବଳ ଉଲ୍ଲମ୍ଫନପୂର୍ବକ ପ୍ରଭୁଙ୍କୁ ସ୍ରୋତସ୍ୱତୀର ପରପାରବର୍ତ୍ତୀ କଲା । ପ୍ରତାପସିଂହ • ନିର୍ବିପଦରେ ଏତେଦୂର ପର୍ଯ୍ୟନ୍ତ ଆଗତ ହେଲେ; କିନ୍ତୁ ରଣଶ୍ରାନ୍ତ ଘୋଟକ ଏ ଉଲ୍ଲମ୍ଫନର ବେଗ ଆଉ ସମ୍ଭାଳି ପାରିଲା-ନାହିଁ । ଅକସ୍ମାତ୍ ତାହାର ମସ୍ତକ ବିଘୂର୍ଣ୍ଣିତ ହେବାକୁ ଲାଗିଲା । ସେ ଆଉ ସରଳଭାବରେ ଛିଡ଼ା ହୋଇ ନ ପାରି ଭୂମିଉପରେ ନିପତିତ ହେଲା । ପ୍ରତାପସିଂହ ମଧ୍ୟ ଘୋଟକ ସଙ୍ଗେ ସଂଜ୍ଞାଶୂନ୍ୟ ହୋଇ ନିପତିତ ହେଲେ ।

ଘୋଟକାରୂଢ଼ ଶକ୍ତସିଂହ ଏହି ଭୟାବହ ଘଟନା ଅବଲୋକନ କରି ଭୟରେ ପ୍ରକମ୍ପିତ ହେବାକୁ ଲାଗିଲେ । ମୁହୂର୍ତ୍ତ ମଧ୍ୟରେ ତାହାଙ୍କର ଘୋଟକ ମୋଗଲ ଅଶ୍ୱାରୋହିଦ୍ୱୟଙ୍କ ନିକଟବର୍ତ୍ତୀ ହୁଅନ୍ତେ, ସେ ଅଦମ୍ୟ ବିକ୍ରମସହକାରେ ସେମାନଙ୍କର ପ୍ରାଣବିନାଶ କରି ପ୍ରତାପସିଂହଙ୍କ ନିକଟକୁ ଗମନ କଲେ । ରାଣାଙ୍କ ରଣଶ୍ରାନ୍ତ ଆନନରେ ସ୍ୱାଧୀନତାର ଶୁଭ୍ର ଆଲୋକ ଶୋଭାପାଉଥିଲା । କ୍ଲାନ୍ତିଜନିତ ଘର୍ମବିନ୍ଦୁନିଚୟ ହୀରା ମୁକ୍ତା-ସଦୃଶ ତାଙ୍କ ମୁଖକୁ ଅଳଙ୍କୃତ କରୁଥିଲା । ନେତ୍ରଯୁଗଳ ନିମୀଳିତ, ଶରୀର ଅବସନ୍ନ । ରାଣାଙ୍କ ଅବସ୍ଥାରୁ ଶକ୍ତସିଂହ ସବୁ ବୁଝିପାରି ନିର୍ଝରିଣୀରୁ ଶୀତଳ ଜଳ ଆନୟନପୂର୍ବକ ତାଙ୍କ ପରିଚର୍ଯ୍ୟାରେ ନିଯୁକ୍ତ ହେଲେ । କ୍ଷଣକାଳ ପରେ ପ୍ରତାପସିଂହଙ୍କର ଚୈତନ୍ୟୋଦୟ ହେଲା । ଚକ୍ଷୁ ଉନ୍ମୀଳିତ କରି ସେ ଦେଖିଲେ ଯେ, ଶକ୍ତସିଂହ ତାଙ୍କ ନିକଟରେ ଦଣ୍ଡାୟମାନ । ହୃଦୟରେ ଗଭୀର ବେଦନା ଅନୁଭବ କରି ସେ ଅତି କ୍ଷୀଣସ୍ୱରରେ କହିଲେ; "ଭାଇ,

ଅଛି; ଭଲ କରଛ । କିନ୍ତୁ, ଭାଇ, ଗୋଟିଏମାତ୍ର ଅନୁରୋଧ । ଜୀବନ୍ତ 'ପ୍ରତାପସିଂହକୁ ମୋଗଲର ନିକଟକୁ ନିଅନା । ତୁମ୍ଭ ହସ୍ତରେ ତରବାରି ଅଛି—ସେହି ତରବାରିରେ ମୋର ମସ୍ତକ ଛେଦନ କରି ନିଜର କର୍ତ୍ତବ୍ୟ ସାଧନ କର ।"

ଶକ୍ତସିଂହଙ୍କ ନୟନଯୁଗଳରୁ ଅଶ୍ରୁଧାରା ବହିବାକୁ ଲାଗିଲା । ସେ ଜାନୁପାତ ହୋଇ ଅଗ୍ରଜଙ୍କ ଚରଣଧୂଳି ମସ୍ତକରେ ଗ୍ରହଣ କଲେ । ପ୍ରତାପସିଂହଙ୍କ ଚକ୍ଷୁଆଗରେ ଗୋଟିଏ ସ୍ୱର୍ଗୀୟ ଦୃଶ୍ୟର ମନୋହର ଛବି ପ୍ରତିଭାତ ହେଲା । ଆନନ୍ଦରେ, ଉଲ୍ଲାସରେ ତାଙ୍କ ଚକ୍ଷୁ ମଧ ଲୋତକପୂର୍ଣ୍ଣ ହେଲା । ସେ ଅତି କଷ୍ଟରେ ଉଠି ବାହୁ-ଲତା-ବେଷ୍ଟନପୂର୍ବକ ଶକ୍ତସିଂହଙ୍କ ଆଲିଙ୍ଗନ କଲେ । ଉଭୟେ ଉଭୟଙ୍କ ସ୍କନ୍ଧୋପରି ମସ୍ତକସ୍ଥାପନପୂର୍ବକ ଅବିରଳ ଅଶ୍ରୁଧାରାରେ ପରସ୍ପର ଶରୀରକୁ ସିକ୍ତ କଲେ । ଭ୍ରାତୃପ୍ରେମର ସ୍ୱଚ୍ଛ ମନ୍ଦାକିନୀ-ନୀରରେ ସର୍ବବିଧ ଆବିଳତା ଧୌତ ହୋଇଗଲା । ବହୁକ୍ଷଣ ପର୍ଯ୍ୟନ୍ତ କାହାରି ମୁଖରୁ ବାକ୍ୟନିଃସୃତ ହୋଇପାରିଲାନାହିଁ । ସେମାନେ କେବଳ କାନ୍ଦିବାକୁ ଲାଗିଲେ ।

କ୍ରମେ ଶକ୍ତସିଂହ କ୍ଷମାଭିକ୍ଷାପୂର୍ବକ ଅଗ୍ରଜଙ୍କ ନିକଟରେ ସମସ୍ତ ବୃତ୍ତାନ୍ତ ବିବୃତ କଲେ । ପ୍ରତାପସିଂହଙ୍କ ମନ ଅସ୍ୱସ୍ଥ ହେଲା । କିନ୍ତୁ ଏ କଣ ? ସମୀପରେ ଚୈତକର ମୃତ ଦେହ ! ପ୍ରଥମେ ପ୍ରତାପସିଂହ ନିଜ ଚକ୍ଷୁକୁ ବିଶ୍ୱାସ କରିପାରିଲେନାହିଁ ! ଚୈତକର ନାସିକାନିକଟକୁ ହସ୍ତ ନେଇ ଦେଖିଲେ ଯେ, ପ୍ରଭୁଭକ୍ତ ଚୈତକ ପ୍ରଭୁଙ୍କ ପ୍ରାଣରକ୍ଷା କରିବାକୁ ଯାଇ ନିଜ ପ୍ରାଣ ହରାଇଅଛି ! ମୁହୂର୍ତ୍ତିପୂର୍ବେ ଭ୍ରାତୃମିଳନରେ ପ୍ରତାପଙ୍କ ମନରେ ଯେଉଁ ଆନନ୍ଦ ଜାତ ହୋଇଥିଲା, ତାହା ତୀବ୍ର ନିରାନନ୍ଦରେ ପରିଣତ ହୋଇଗଲା । ରାଣାଙ୍କର ସମସ୍ତ ଆଶାଭରସା ବିଲୁପ୍ତ ହେଲା । ସେ ଶୋକରେ ଅଧୀର ହୋଇ କାନ୍ଦିବାକୁ ଲାଗିଲେ । ଶକ୍ତସିଂହ ତାଙ୍କୁ

ଅନେକ ବୁଝାଇ କହିଲେ, ଚୈତକର ସ୍ଥାନ ପୂର୍ଣ୍ଣ କରିବା ନିମନ୍ତେ ନିଜ ଘୋଟକ ତାଙ୍କୁ ପ୍ରଦାନ କଲେ, ତଥାପି ପ୍ରତାପଙ୍କ ମନ ପୂର୍ବବତ୍‌ ଅଶାନ୍ତ ରହିଲା । ସେ ଚୈତକପରି ଘୋଟକ ଅନ୍ୟ କାହିଁ ପାଇବେ ? ଶକ୍ତସିଂହ ମୋଗଲ-ଶିବିରକୁ ଶୀଘ୍ର ପ୍ରତ୍ୟାବୃତ୍ତ ହେବାର ଆଶଙ୍କା ଦେଇ ଅଗ୍ରଜଙ୍କ ନିକଟରୁ ବିଦାୟ ଗ୍ରହଣ କଲେ । ମାର୍ଗରେ ମୋଗଲ ଅଶ୍ୱାରୋହିଦ୍ୱୟଙ୍କ ଘୋଡ଼ାଦ୍ୱୟ ଚରୁଥିଲେ । ସେଥିରୁ ଗୋଟାଏ ଆଣି ତତ୍‌ପୃଷ୍ଠରେ ଆରୋହଣପୂର୍ବକ ସେ ମୋଗଲଶିବିରାଭିମୁଖରେ ପ୍ରସ୍ଥାନ କଲେ ।

ପ୍ରତାପସିଂହ ଚୈତକର ଶବର ସଂସ୍କାର କରି ଉଦୟପୁରକୁ ଗମନ କଲେ । ଘୋଟକର ସ୍ମୃତିରକ୍ଷା ନିମିତ୍ତ ସେଠାରେ ତାଙ୍କ ଆଦେଶକ୍ରମେ ଗୋଟିଏ ସ୍ମୃତି-ସ୍ତମ୍ଭ ନିର୍ମିତ ହେଲା । ଅନୁପମ ପ୍ରଭୁଭକ୍ତିର ମହିମାକୀର୍ତ୍ତନପୂର୍ବକ ସ୍ତମ୍ଭଟି ଅଦ୍ୟାବଧି ବିଦ୍ୟମାନ ରହିଅଛି ।



## ଏକାଦଶ ପରିଚ୍ଛେଦ

# ମୋଗଲ ଶିବିରେ

ଆଜ ମୋଗଲ-ଶିବିରରେ ଆନନ୍ଦର ପୂର୍ଣ୍ଣୋଚ୍ଛ୍ୱାସ ପ୍ରବର୍ତ୍ତିତ ହୋଇଅଛି । ମେବାଡ଼ର ଅଚିନ୍ତନୀୟ ପରାଜୟରେ ମୋଗଲମାନଙ୍କର ଆଲୋଚନା ପ୍ରସ୍ଫୁଟିତ ହୋଇଅଛି । ନୃତ୍ୟଗୀତର ମନୋମୋହକର ଉଲ୍ଲାସ-ଧ୍ୱନିରେ ମୋଗଲଶିବିର ପୂର୍ଣ୍ଣ ।

ମୋଗଲମାନେ ପ୍ରଥମେ ଭାବିଥିଲେ ଯେ, ପ୍ରତାପସିଂହ ଯୁଦ୍ଧରେ ପରାସ୍ତ ଓ ନିହତ ହୋଇଅଛନ୍ତି । ମେବାଡ଼ର କମନୀୟ ଲଲାଟରୁ ସ୍ୱାଧୀନତା-ମଣି ଖସି ପଡ଼ିଅଛି । ଆଉ ଅଳ୍ପକାଳପରେ ସ୍ୱାଧୀନ ମେବାଡ଼ ସେମାନଙ୍କର ହସ୍ତଗତ ହେବ । ମେବାଡ଼-ପର୍ବତର ଶିଖରଦେଶରେ ମୋଗଲର ବିଜୟ-ବୈଜୟନ୍ତୀ ସମୁଡ୍ଡୀନ ହେବ । ରାଜକୋଷର ଅପରିମିତ ଧନରାଶି ଲୁଣ୍ଠନକରି ସୈନିକମାନେ ଧନଶାଳୀ ହେବେ । ଯୁବରାଜ ସେଲିମ୍ ଅକବରଙ୍କ ନିକଟରେ ଉନ୍ନତମସ୍ତକରେ ଛିଡ଼ା ହୋଇ ପିତୃଦତ୍ତ ପୁରସ୍କାରପ୍ରାପ୍ତିରେ ନିଜକୁ ଗୌରବାନ୍ୱିତ ମନେ କରିବେ ।

ଅଳ୍ପକ୍ଷଣପରେ ସମ୍ବାଦ ପ୍ରଚାରିତ ହେଲା ଯେ, "ମୋଗଲମାନେ ପ୍ରତାପ-ଭ୍ରମରେ ପ୍ରଭୁଭକ୍ତ ମାନାଙ୍କ ପ୍ରାଣବିନାଶ କରିଥିଛନ୍ତି । ପ୍ରତାପ-

ସିଂହ ଯୁଦ୍ଧକ୍ଷେତ୍ରରୁ ପଳାୟନ କରି ସ୍ୱୀୟ ଜୀବନ ରକ୍ଷା କରୁଅଛନ୍ତି । ଅବଶ୍ୟ ଦୁଇଜଣ ମୋଗଲ ଅଶ୍ୱାରୋହୀ ତାହାଙ୍କର ପଛେପଛେ ଗୋଡ଼ାଇଅଛନ୍ତି; କିନ୍ତୁ ସେମାନେ ପ୍ରତାପଙ୍କର ସମକକ୍ଷ ହୋଇପାରିବେ କି ? ତେବେ ମୋଗଲମାନଙ୍କର କି ଦଶା ହେବ ? ସେମାନେ ମେବାଡ଼ ଅଧିକାର କରିବେ କିପରି ? ଅକବର ସେମାନଙ୍କୁ କହିବେ କଣ ? ଏବମ୍ଭୂତ ଭାବନା-ରାଜିର ପରିଣାମସ୍ୱରୂପ ସେମାନଙ୍କ ଆନନ୍ଦ ମୁହୂର୍ତ୍ତମଧ୍ୟରେ ନିରାନନ୍ଦରେ ପରିଣତି ଲଭିଲା ।

ଶକ୍ତସିଂହଙ୍କ ଆଚରଣରେ ମୋଗଲ-ଶିବିରରେ ସମସ୍ତ କ୍ଷୁବ୍ଧ ହୋଇଥିଲେ । ସେ ଯୁଦ୍ଧକ୍ଷେତ୍ରରୁ ଆସି ନିଶ୍ଚିନ୍ତମନରେ ନିଜ ଶିବିରରେ ବସିଥିଲେ । ଶତ୍ରୁସହିତ ଯୁଦ୍ଧ ନ କରି ସେ କଣ କେବଳ ମୋଗଲାନ୍ନ ଧ୍ୱଂସ କରିବାକୁ ଆସିଥିଲେ ? ପରେ ଯେତେବେଳେ ସେମାନେ ଶୁଣିଲେ ଯେ, ଶକ୍ତସିଂହ ମଧ୍ୟ ପ୍ରତାପଙ୍କର ପଶ୍ଚାଦ୍ଧାବନ କରୁଅଛନ୍ତି, ସେମାନଙ୍କ ମନ ଆନନ୍ଦ-ରସରେ ଆପ୍ଲୁତ ହୋଇଗଲା । ପ୍ରତାପଙ୍କ ବିନାଶବିଷୟରେ ଆଉ କାହାରି ସନ୍ଦେହ ରହିଲା ନାହିଁ ।

ମୋଗଲମାନେ ଭାବିଥିଲେ ଯେ, ଶକ୍ତସିଂହ ପ୍ରତାପଙ୍କ ଜୀବିତ ବା ମୃତ କଳେବର ସହିତ ଶୀଘ୍ର ପ୍ରତ୍ୟାବୃତ୍ତ ହେବେ; କିନ୍ତୁ ତାହାଙ୍କର ଅଯଥା ବିଳମ୍ବ ଦେଖି ସେମାନଙ୍କ ମନରେ ନାନା ପ୍ରକାର ସନ୍ଦେହର ଉଦ୍ରେକ ହେଲା । କ୍ୱଚିତ ପ୍ରତାପସିଂହ ପଶ୍ଚାଦ୍ଧାବନକାରୀମାନଙ୍କ ପ୍ରାଣ-ବିନାଶ କରି ନିରାପଦରେ ପଳାୟନ କରୁଅଛନ୍ତି, ନତୁବା ଶକ୍ତସିଂହ ମୋଗଲ ଅଶ୍ୱାରୋହିଦ୍ୱୟଙ୍କୁ ସଂହାର କରି ଅଗ୍ରଜଙ୍କୁ ନିଷ୍କଣ୍ଟକ କରୁଅଛନ୍ତି । ସେମାନେ ଏପରି ଦୋଳାୟିତଚିତ୍ତବୃତ୍ତି ଥିବାସମୟରେ ଘୋଟକାରୂଢ଼ ଶକ୍ତସିଂହ ମୋଗଲ-ଶିବିରରେ ଉପନୀତ ହେଲେ । ସେ କାହାରି ସହିତ କୌଣସି ବାକ୍ୟାଳାପ ନ କରି ଏକାବେଳକେ ସେଲିମ୍‌ଙ୍କ ସମ୍ମୁଖରେ

ଉପସ୍ଥିତ ହେଲେ । ଯୁବରାଜ ତାଙ୍କୁ ଦେଖିଲାକ୍ଷଣି ପ୍ରଥମେ ମୋଗଲ ଅଶ୍ୱାରୋହୀଦ୍ୱୟଙ୍କ ବିଷୟ ଜିଜ୍ଞାସା କଲେ । ଶକ୍ତସିଂହଙ୍କ ମନରେ ଏଥି-ପୂର୍ବେ ଯେଉଁ ଆଶଙ୍କା ଜନ୍ମିଥିଲା, ତାହା ଅଚିରେ ସଂଘଟିତ ହେଲା । ସେ କି ଉତ୍ତର ଦେବେ, କିଛି ଠିକ କରି ନ ପାରି କ୍ଷଣକାଳ ଇତସ୍ତତଃ କରି-ବାକୁ ଲାଗିଲେ । ଅବଶେଷରେ ଧୀରେ ଧୀରେ ଜଡ଼ିତସ୍ୱରରେ ଉତ୍ତର କଲେ, "ପ୍ରତାପସିଂହ ସେମାନଙ୍କୁ ହତ୍ୟା କରିଅଛନ୍ତି । ମୋର ଘୋଟକଟି ମଧ୍ୟ ପ୍ରତାପଙ୍କ ହସ୍ତରେ ନିହତ ହେବାରୁ ମୁଁ ଖୋରସାନୀ*ଅଶ୍ୱାରୋହୀର ଅଶ୍ୱରେ ଆରୂଢ଼ ହୋଇ ଆସିଅଛି ।"

ଶକ୍ତସିଂହଙ୍କ ଭାବଭଙ୍ଗୀ ଦେଖି ସେଲିମ୍‌ଙ୍କ ସନ୍ଦେହ ଅଙ୍କୁର ଦୃଢ଼ୀଭୂତ ହେଲା । ସେ ଗମ୍ଭୀରଭାବରେ ପୁନର୍ବାର ଶକ୍ତସିଂହଙ୍କୁ ଜିଜ୍ଞାସା କଲେ, "ଆପଣ ଯଦି ସତ୍ୟ କଥା କହିବେ, ତାହାହେଲେ ଆପଣଙ୍କର ସକଳ ଦୋଷ ମାର୍ଜନା କରିବି ।" ଶକ୍ତସିଂହ ଉତ୍ତର କଲେ, "ଅଗ୍ରଜର ବିପଦ୍-ଦର୍ଶନରେ ଅନୁଜର ଯାହା କର୍ତ୍ତବ୍ୟ, ମୁଁ ତାହା କରିଅଛି ।"

ସେଲିମ୍‌ଙ୍କ ସନ୍ଦେହ ଅଧୁନା ସ୍ଥିର ସିଦ୍ଧାନ୍ତରେ ପରିଣତ ହେଲା । ପୂର୍ବ ପ୍ରତିଜ୍ଞା ରକ୍ଷାକରି ସେ ଶକ୍ତସିଂହଙ୍କ ପ୍ରତି କୌଣସି ନିଷ୍ଠୁର ବ୍ୟବ-ହାର ନ କଲେ ସୁଦ୍ଧା ତାଙ୍କ ମୁଖମଣ୍ଡଳରେ ଘୃଣା ଓ ଅବଜ୍ଞାର ସ୍ପଷ୍ଟ ଚିହ୍ନ ପ୍ରତିଭାତ ହେଉଥିଲା । ଶକ୍ତସିଂହ ମୋଗଲଶିବିରରୁ ବିଦାୟ ନେଇ ଉଦୟ-ପୁରାଭିମୁଖରେ ପ୍ରସ୍ଥାନ କଲେ ।

---

* ଯେଉଁ ଅଶ୍ୱାରୋହୀ ଦୁଇଜଣ ପ୍ରତାପଙ୍କ ଅନୁଧାବନ କରିଥିଲେ, ସେମାନେ ଖୋରସାନୀ ଓ ମୁଲତାନୀ ନାମରେ ପରିଚିତ ।

ସେ ସମୟକୁ ବର୍ଷାକାଳ-ସମୁପସ୍ଥିତ ହୋଇଥିଲାଣି । ଶ୍ରାବଣର ଅବିରଳ ବାରିଧାରରେ ମେବାଡ଼ର ଗିରିପଥଗୁଡ଼ିକ ଦୁର୍ଗମ ହୋଇପଡ଼ିଲା । ଏଣୁକରି ମୋଗଲମାନେ ଯୁଦ୍ଧରେ ଜୟୀ ହେଲେ ସୁଦ୍ଧା ଆଉ ଅଗ୍ରସର ହୋଇପାରିଲେ ନାହିଁ । ସେଲିମ୍ ଅଗତ୍ୟା ଯୁଦ୍ଧ ସ୍ଥଗିତ ରଖି ଦିଲ୍ଲୀକୁ ପ୍ରତ୍ୟାବୃତ୍ତ ହେଲେ ।



ଦ୍ୱାଦଶ ପରିଚ୍ଛେଦ

# ହିତେ ବିପରୀତ



ଆଗ୍ରାରେ ଅବସ୍ଥାନକାଳରେ ଅକବରଙ୍କର ଦୁଇଗୋଟି ଶିଶୁସନ୍ତାନର ମୃତ୍ୟୁ ହୋଇଥିବାରୁ ତାଙ୍କ ମନ ଗଭୀର ଚିନ୍ତାକୁଳ ହୋଇଥିଲା । ସେ ସମୟରେ ଶେକ୍ ସଲିମ୍ ଚିସ୍ତି ନାମରେ ଜଣେ ମୁସଲମାନ ଫକୀର ସିକ୍ରିର ଚଟାଣ ମଧ୍ୟରେ ବାସ କରୁଥିଲେ । ଏହି ମହାପୁରୁଷଙ୍କ କୃପାରୁ ସମ୍ରାଟଙ୍କର ତିନିଗୋଟି ପୁତ୍ର ଜାତ ହୋଇଥିଲେ । ସେମାନଙ୍କ ନାମ ସେଲିମ୍, ମୁରାଦ୍ ଓ ଦାନିୟେଲ୍ । ମହାପୁରୁଷଙ୍କ କରୁଣାର ସ୍ମରଣ ନିମନ୍ତେ ସମ୍ରାଟ୍ ଜ୍ୟେଷ୍ଠ ପୁତ୍ରଙ୍କ ନାମ ସେଲିମ୍ ରଖିଥିଲେ, ଏବଂ କିଛି କାଳ ନିମନ୍ତେ ତାଙ୍କ ରାଜଧାନୀ ଆଗ୍ରାରୁ ଫତେପୁର ସିକ୍ରିକୁ ପରିବର୍ତ୍ତିତ ହୋଇଥିଲା ।

ଯୁବରାଜ ସେଲିମ୍ ଅକବରଙ୍କ ଅଶେଷ କୃପାର ପାତ୍ର ହୋଇଥିଲେ । ତାଙ୍କୁ ସାମ୍ରାଜ୍ୟର ଉପଯୋଗୀ କରିବା ନିମନ୍ତେ ସମ୍ରାଟ୍ କୌଣସି ଚେଷ୍ଟାର ତ୍ରୁଟି କରୁନଥିଲେ । ବାଦଶାହୀ କୃପାର ନନ୍ଦନକାନନରେ ପରିବର୍ଦ୍ଧିତ ହୋଇ ଯୁବରାଜ ଅଶେଷ ସୁଖରେ କାଳାତିପାତ କରୁଥିଲେ । ଆମ୍ଭେମାନେ ଆଗରୁ କହିଅଛୁଁ ଯେ, ସେଲିମଙ୍କ ଯୋଗ୍ୟତା ପ୍ରମାଣିତ କରିବା ନିମନ୍ତେ ଅକବର ତାଙ୍କୁ ମେବାଡ଼-ଯୁଦ୍ଧରେ ସେନାପତି-ପଦରେ ବରିତ କରି-ଥିଲେ । ମାନସିଂହଙ୍କ କୌଶଳଯୋଗେ ବୀରକେଶରୀ ପ୍ରତାପସିଂହ

ଯୁଦ୍ଧରେ ପରାସ୍ତ ହେଲେ । ଆକବରଙ୍କ ହୃଦୟ ଅନନ୍ୟଭୂତପୂର୍ବ ଆନନ୍ଦରେ ଉତ୍ଫୁଲ୍ଲ ହେବାକୁ ଲାଗିଲା । ଯୁଦ୍ଧରୁ ପ୍ରତ୍ୟାଗତ ବିଜୟୀ ସେଲିମଙ୍କୁ ସେ ପୂର୍ବାପେକ୍ଷା ଅଧିକ ସ୍ନେହ କରିବାକୁ ଲାଗିଲେ ।

ସାମ୍ରାଜ୍ୟର ପ୍ରଜାମାନଙ୍କର ବିଶ୍ୱାସ ଯେ, ସେଲିମ୍ ପ୍ରତାପସିଂହଙ୍କୁ ପରାସ୍ତ କରିଅଛନ୍ତି । ଯୁବରାଜଙ୍କ ଅସୀମ ରଣପାଣ୍ଡିତ୍ୟ ଯୋଗେ ମେବାରର ଉନ୍ନତ ମସ୍ତକ ଧୂଳିବିଲୁଣ୍ଠିତ ହୋଇଅଛି । ମାନସିଂହ ମଧ୍ୟ ପ୍ରଜାମାନଙ୍କଠାରୁ ଏପରି କଥା ଶୁଣିଅଛନ୍ତି; କିନ୍ତୁ ଆକବର କେବେ ତାଙ୍କ ସମକ୍ଷରେ ଯୁବରାଜଙ୍କର ପ୍ରଶଂସା କରିନାହାନ୍ତି । ବରଂ ମାନସିଂହ ହଳଦୀଘାଟ-ଯୁଦ୍ଧରେ ଜୟଲାଭର ପ୍ରଧାନ କାରଣ ଥିବାରୁ ସମ୍ରାଟ୍ ତାଙ୍କୁ ବିଶେଷ-ଭାବରେ ପୁରସ୍କୃତ କରିଅଛନ୍ତି । କିନ୍ତୁ ତଥାପି ଅମ୍ବରାଧିପତିଙ୍କ ମନରେ ଯେଉଁ ସଂଶୟ ଜାତ ହୋଇଅଛି, ତାହା କ୍ରମେ ବଦ୍ଧମୂଳ ହେଉଅଛି । ଆକବର ମୁଖରେ ଯୁବରାଜଙ୍କ ପ୍ରାଧାନ୍ୟ ସ୍ୱୀକାର ନ କଲେ ସୁଦ୍ଧା କାର୍ଯ୍ୟରେ ତାହା ପ୍ରତିପାଦିତ ହେଉଅଛି । ଅଧୁନା ଦିଲ୍ଲୀ-ଦରବାରରେ ଯୁବରାଜଙ୍କ ପ୍ରଭାବ ଅପ୍ରତିହତ । ଯେଉଁ ଆସନରେ ଆସୀନ ହୋଇ ମାନସିଂହ ମୋଗଲ-ସାମ୍ରାଜ୍ୟର ଭାଗ୍ୟ ପରିଚାଳନ କରୁଥିଲେ, ତାହା ଅଧୁନା ସେଲିମଙ୍କ ଦ୍ୱାରା ଅଧିକୃତ ହୋଇଅଛି । ନିଜ ଅଧିକାର ଖର୍ବ ହେଲେ ଲୋକେ ଯେପରି ହୋଇଥାନ୍ତି, ମାନସିଂହ ମଧ୍ୟ ଠିକ୍ ସେପରି ହୋଇ-ଥିଲେ । ଗଭୀର ଅନୁଶୋଚନା ଓ ପ୍ରତିହିଂସା-ଗ୍ରହଣେଚ୍ଛାରେ ତାଙ୍କ ହୃଦୟ ପୂର୍ଣ୍ଣ ହେଲା । ସେଲିମଙ୍କୁ ଅପଦସ୍ଥ ଓ ଅପମାନିତ କରିବା ନିମନ୍ତେ ସେ ନାନା ପନ୍ଥା ଉଦ୍ଭାବନ କରିବାକୁ ଲାଗିଲେ ।

ଏହି ମାନସିକ ବିକାର କ୍ରମେ ଭୀଷଣ ଆକାର ଧାରଣ କଲା । ମାନସିଂହ ଓ ସେଲିମ୍ ପ୍ରକାଶ୍ୟଭାବରେ ପରସ୍ପର ପ୍ରତି ବିଦ୍ରୋହାଚରଣ କଲେ । ଆକବରଙ୍କ ସୁଖସ୍ୱପ୍ନ ମୁହୂର୍ତ୍ତମଧ୍ୟରେ ଧୂଳିସାତ୍ ହେଲା । ଉଚ୍ଚ

ସେଲିମଙ୍କୁ ଯେତେ ବୁଝାଇ କହିଲେ ସୁଦ୍ଧା କିଛି ଫଳ ହେଲାନାହିଁ । ଅକବର ଏବେ କରିବେ କଣ ? ସେ କାହାକୁ ଛାଡ଼ି କାହାକୁ ରଖିବେ ? ତାଙ୍କ ଉଚ୍ଚାକାଂକ୍ଷାର ପ୍ରଧାନ ସହାୟ ମାନସିଂହଙ୍କୁ ଛାଡିବାର ସମୟ ଉପସ୍ଥିତ ହୋଇନାହିଁ । ସେଲିମ୍ ଯେ ତାଙ୍କ ଜ୍ୟେଷ୍ଠାତ୍ମଜ—ପୁଣି ସାମ୍ରାଜ୍ୟର ଉତ୍ତରାଧିକାରୀ ! ମାନସିଂହଙ୍କ ମନସ୍ତୁଷ୍ଟି ନିମନ୍ତେ ସେ ନିଜ ପୁତ୍ରକୁ ଛାଡିବେ କିପରି ? ଉଭୟଙ୍କ ମଧ୍ୟରେ ସଦ୍ଭାବ ରହିବା ହିଁ ସାମ୍ରାଜ୍ୟପକ୍ଷରେ ଶ୍ରେୟସ୍କର । ସାମ୍ରାଜ୍ୟର ପୂର୍ଣ୍ଣବିଜୟ-ପ୍ରାପ୍ତି ପରେ ମାନସିଂହ ପରିତ୍ୟକ୍ତ ହୋଇପାରନ୍ତି; କିନ୍ତୁ ସେଲିମଙ୍କ ଅବୁଝା ମନ କାହିଁରେ ପ୍ରବୋଧ ମାନିଲା ନାହିଁ । ଅକବର ବିଷମ ସମସ୍ୟାରେ ପଡ଼ିଲେ—ପୂର୍ବକୃତ ଭ୍ରମନିମନ୍ତେ ସେ ଗଭୀର ମନସ୍ତାପ ଭୋଗ କରିବାକୁ ଲାଗିଲେ ।



# ତ୍ରୟୋଦଶ ପରିଚ୍ଛେଦ ।



## ପୁନର୍ବାର ଯୁଦ୍ଧ ।



ହଲଦୀଘାଟ ଯୁଦ୍ଧକ୍ଷେତ୍ରରେ ମେବାଡ଼ର ଶ୍ରେଷ୍ଠ ବୀରମାନେ ଧରାଶାୟୀ ହୋଇଥିଲେ । ପ୍ରତାପସିଂହ ଯୁଦ୍ଧକ୍ଷେତ୍ରରୁ ପ୍ରାଣ ଘେନି ଚାଲି ଆସିଥିଲେ ସୁଦ୍ଧା ମୋଗଲ ସହିତ ପୁନର୍ବାର ଯୁଦ୍ଧ କରିବା ନିମନ୍ତେ ତାହାଙ୍କର ସାମର୍ଥ୍ୟ ନ ଥିଲା । କିନ୍ତୁ ତଥାପି ତାଙ୍କ ମନରେ ନିରାଶା ସ୍ଥାନ ପାଇପାରି-ନଥିଲା । ସ୍ୱାଧୀନତା-ଯୁଦ୍ଧରେ ବହୁବାର ପରାଜୟର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଯେ ସର୍ବବିଧ ବିଫଳତାସତ୍ତ୍ୱେ ଅଦମ୍ୟ ଉତ୍ସାହସହକାରେ କର୍ତ୍ତବ୍ୟ-ପଥରେ ଅଗ୍ରସର ହୁଏ, ସ୍ୱାଧୀନତା-ରାଣୀ ହସି ହସି ତାକୁ ଆଲିଙ୍ଗନ କରିଥାନ୍ତି ।

ପ୍ରତାପସିଂହଙ୍କ ବୀର୍ଯ୍ୟ ଓ ସାହସ ଅତୁଳନୀୟ । ମୋଗଲ ସହିତ ଯୁଦ୍ଧରେ ପ୍ରବୃତ୍ତ ହେବା ପୂର୍ବେ ସେ ପରାଜୟ ନିମନ୍ତେ ପ୍ରସ୍ତୁତ ଥିଲେ । ଏଥିନିମନ୍ତେ ଦାରିଦ୍ର୍ୟ-ବ୍ରତ ତାଙ୍କଦ୍ୱାରା ଅବଲମ୍ବିତ ହୋଇଥିଲା । ସେ ଉତ୍ତମ-ରୂପେ ଜାଣିଥିଲେ ଯେ,ଅସୀମ ବଳଶାଳୀ ଆକବରଙ୍କ ସହିତ ଯୁଦ୍ଧ କଲେ ପରାଜୟ ଅବଶ୍ୟମ୍ଭାବୀ । ପରାଜୟର ଲାଞ୍ଛନା ଥରେ ଦୁଇଥର ନୁହେଁ, ବହୁବାର ତାଙ୍କୁ ସହିବାକୁ ପଡ଼ିବ । କିନ୍ତୁ ଦାରିଦ୍ର୍ୟ ଯାହାର ବ୍ରତ, ସାମାନ୍ୟ ଫଳମୂଳ ଯାହାର ଆହାର, ପରାଜୟ ତାହାର କଣ କରିପାରେ ?

ପାଠକମାନେ ଜାଣନ୍ତି ଯେ, ବର୍ଷାକାଳ ସମୁପସ୍ଥିତ ହେବାରୁ ମୋଗଲମାନେ ଯୁଦ୍ଧରୁ କ୍ଷାନ୍ତ ହୋଇଥିଲେ । କିନ୍ତୁ ପରେ ଯେତେବେଳେ ବସନ୍ତାଗମରେ ପ୍ରକୃତି-ରାଜ୍ୟରେ ଆନନ୍ଦର ସ୍ରୋତ ପ୍ରବାହିତ ହେଲା ବୃକ୍ଷଗୁଡ଼ିକ ନୂତନ ପତ୍ର ଓ ପୁଷ୍ପରେ ବିଭୂଷିତ ହେଲେ, ମେବାଡ଼ର ଉପତ୍ୟକାରାଜିରେ ମୋଗଲମାନଙ୍କର ପୁନରାବିର୍ଭାବ ସଂଘଟିତ ହେଲା । ପୁନର୍ବାର ହଳଦୀଘାଟର ବିଖ୍ୟାତ ଯୁଦ୍ଧକ୍ଷେତ୍ରରେ ରାଜପୁତ ଓ ମୋଗଲମାନଙ୍କ ମଧ୍ୟରେ ଭୀଷଣ ସଂଗ୍ରାମ ଆରମ୍ଭ ହେଲା । ରାଣା ପ୍ରତାପସିଂହ ଯୁଦ୍ଧରେ ସଂପୂର୍ଣ୍ଣରୂପେ ପରାସ୍ତ ହୋଇ ପଳାୟନ କଲେ । ଉଦୟପୁର ଦୁର୍ଗ ମୋଗଲମାନଙ୍କ ଦ୍ୱାରା ଅଧିକୃତ ହେଲା ।

ପ୍ରତାପସିଂହ ଉଦୟପୁର ପରିତ୍ୟାଗ କରି ଅରଣ୍ୟରେ ଲୁକ୍କାୟିତ ରହିଲେ । କତିପୟ ବିଶ୍ୱସ୍ତ ଅନୁଚରବ୍ୟତୀତ ତାହାଙ୍କର ଅନ୍ୟ କୌଣସି ସମ୍ବଳ ନାହିଁ । ତଥାପି ତାହାଙ୍କର ସ୍ୱାଧୀନ ମସ୍ତକ ପୂର୍ବବତ୍ ଉନ୍ନତ । ଯୁଦ୍ଧରେ ପ୍ରାଣ ଯିବ ପଛକେ ସେ ଶତ୍ରୁର ପଦାନତ ହେବେନାହିଁ ।

ମେବାଡ଼ର ପର୍ବତସମୂହରେ ଏପରି ଗୁପ୍ତ ସ୍ଥାନଗୁଡ଼ିକ ଅଛି ଯେ, ତହିଁର ସନ୍ଧାନ ପାଇବା ଶତ୍ରୁପକ୍ଷରେ କଷ୍ଟକର । ପ୍ରତାପସିଂହ ଏହି ଗୁପ୍ତ ସ୍ଥାନଗୁଡ଼ିକରେ ଲୁକ୍କାୟିତ ରହି ସୁଯୋଗକ୍ରମେ ଅତର୍କିତଭାବରେ ଶତ୍ରୁ ଉପରେ ନିପତିତ ହେଉଥିଲେ । କେଉଁଠାରେ ତାହାଙ୍କର ଜୟ ହେଉଥିଲା, କେଉଁଠାରେ ବା ମୋଗଲମାନେ ତାଙ୍କୁ ପରାସ୍ତ କରି ଅରଣ୍ୟମଧ୍ୟକୁ ବିତାଡ଼ିତ କରୁଥିଲେ ।

ପ୍ରତାପସିଂହଙ୍କ ପରାଜୟ-ସମ୍ବାଦରେ ଆକବର ଯେତିକି ଆନନ୍ଦିତ ଥିଲେ, ସେତିକି ଦୁଃଖିତ ମଧ୍ୟ ଥିଲେ । କେବଳ ପରାଜୟରେ କଣ ହେବ ? ପ୍ରତାପ ଧୃତ କିମ୍ବା ମୃତ ନ ହେବା ପର୍ଯ୍ୟନ୍ତ ତାହାଙ୍କର ଆଶା

ଫଳବତୀ ହୋଇପାରିବ ନାହିଁ । ପ୍ରତାପସିଂହ କେତେବେଳେ କେଉଁଠାରେ ରହୁଥିଲେ, ତାହା ଜାଣିବା ମୋଗଲମାନଙ୍କର ସାଧ୍ୟାତୀତ ଥିଲା । ସେ ଲୁଚି ଲୁଚି ଶତ୍ରୁ ସହିତ ଯୁଦ୍ଧ କରୁଥିଲେ । ଏପରି ଶତ୍ରୁ ସ୍ୱାଧୀନଭାବରେ ବିଚରଣ କରୁଥିବା ପର୍ଯ୍ୟନ୍ତ, ଆକବର କପରି ସୁଖରେ ନିଦ୍ରା କରନ୍ତେ ?

ଏଆଡ଼େ ପୁଣି ରାଜଧାନୀରେ ଘୋର ଅଶାନ୍ତି । ମାନସିଂହଙ୍କ ଓ ସେଲିମ୍ ପରସ୍ପର ପ୍ରତି ମାତ୍ରାଧିକ ଅସନ୍ତୁଷ୍ଟ । ସେମାନଙ୍କ ବିରୋଧ-ଭାବ ସଂକ୍ରାମିତ ହୋଇ କ୍ରମେ ରାଜଦରବାରର ଅନ୍ୟାନ୍ୟ ପାରିଷଦମାନଙ୍କୁ ମଧ୍ୟ ପ୍ରଭାବିତ କରୁଅଛି । କେହି ମାନସିଂହଙ୍କ ପକ୍ଷ ଅବଲମ୍ବନ କରୁଅଛି, କେହି ବା ସେଲିମଙ୍କ ପକ୍ଷର ପୋଷକତା କରୁଅଛି । ଏ ସବୁ ଦେଖି ଆକବର କଣ କରିବେ ଯେ, କିଛି ଠିକ କରିପାରିଲେ ନାହିଁ । ବାହାରେ ଶତ୍ରୁ-ଆକ୍ରମଣର ଅନିଶ୍ଚିତତା, ଭିତରେ ନିଜ ଦରବାରରେ ଭୀଷଣ ବିଶୃଙ୍ଖଳା । ଆକବର କାହାକୁ ଜିଣିବେ ? ଯେ କୌଣସି ପ୍ରକାରେ ସେଲିମ୍ ଓ ମାନସିଂହଙ୍କ ମଧ୍ୟରେ ସୌହାର୍ଦ୍ଦ ସଂସ୍ଥାପନ ନ କଲେ ନ ଚଳେ । ତେବେ ଆକବରଙ୍କୁ ଏ ବିଷୟରେ ବେଶି କଷ୍ଟ ସ୍ୱୀକାର କରିବାକୁ ପଡ଼ିନଥିଲା । ସେଲିମଙ୍କ ସହିତ ମାନସିଂହଙ୍କ ଭଗିନୀର ବିବାହ ସଂପନ୍ନ କରି ଉଭୟଙ୍କୁ ବନ୍ଧୁତା-ସୂତ୍ରରେ ଆବଦ୍ଧ କରିବା ସହଜସାଧ୍ୟ ହୋଇଥିଲା । ଅବଶ୍ୟ ମାନସିଂହ ଏ ବିଷୟରେ ପ୍ରଥମେ ଅସମ୍ମତ ଥିଲେ— ଯବନ ସହିତ ବୈବାହିକ ସଂପର୍କ ରଖିବାକୁ ଘୃଣାପ୍ରକାଶ କରିଥିଲେ; କିନ୍ତୁ ପରେ, କେଜାଣି କାହିଁକି, ଏହି ବିବାହରେ ସେ ସମ୍ମତି ପ୍ରଦାନ କଲେ । ତାଙ୍କ ଭଗିନୀ ସହିତ ସେଲିମଙ୍କ ବିବାହ ସଂପନ୍ନ ହେଲା । ଯୁବରାଜ ଓ ସେନାପତିଙ୍କ ମଧ୍ୟରେ ଅତିଶୀଘ୍ର ସଖ୍ୟ ସଂସ୍ଥାପିତ ହେଲା ।

ରାଜଧାନୀର ଏହି ଦୁଶ୍ଚିନ୍ତାରୁ ରକ୍ଷା ପାଇ ଆକବର ପ୍ରତାପସିଂହଙ୍କୁ ଧୃତ କରିବା ନିମନ୍ତେ ବିରାଟ ଆୟୋଜନ ଆରମ୍ଭକଲେ । ବାସସ୍ଥାନ,

ଧନହୀନ ପ୍ରତାପଙ୍କ ବିପକ୍ଷରେ ସମ୍ରାଟଙ୍କ ସମଗ୍ର ଶକ୍ତି ନିଯୋଜିତ ହେଲା ! ଚତୁର୍ଦ୍ଦିଗରୁ ମୋଗଲ ସୈନିକମାନେ ମେବାଡ଼କୁ ଘେରି ପକାଇଲେ ସେମାନଙ୍କ ରଣକୋଳାହଳ ଓ ଅସ୍ତ୍ର-ଝନତ୍କାରରେ ମେବାଡ଼ ପ୍ରତିଧ୍ୱନିତ ହେବାକୁ ଲାଗିଲା । ରାଜ୍ୟରେ ଲୋକେ ନିଶ୍ଚିନ୍ତରେ ମୁଠାଏ ଖାଇବାକୁ କିମ୍ବା ଘଡ଼ିଏ ବିଶ୍ରାମ କରିବାକୁ ସୁଦ୍ଧା ଅବସର ପାଇଲେ ନାହିଁ । ଧନଜୀବନ ପ୍ରତି ମୁହୂର୍ତ୍ତରେ ସଙ୍କଟାପନ୍ନ ହୋଇ ରହିଲା । ମେବାଡ଼ର ଗ୍ରାମେ ଗ୍ରାମେ, ପର୍ବତେ ପର୍ବତେ, ମୋଗଲମାନେ ପ୍ରବେଶ କରି ପ୍ରତାପଙ୍କୁ ଅନୁସନ୍ଧାନ କରିବାକୁ ଲାଗିଲେ । ତଥାପି ପ୍ରତାପସିଂହ ଧୃତ ହେଲେନାହିଁ । ବିପଦର ମହାପୀଠରେ ଅବସ୍ଥାନ କରି, ଅନ୍ନାଭାବର ଦାରୁଣ ଚିନ୍ତାରେ ଅଭିଭୂତ ହୋଇ ସୁଦ୍ଧା ସେ ଅବିଚଳିତ ହୃଦୟରେ ଯବନ ସହିତ ଯୁଦ୍ଧ କରିବାକୁ ଲାଗିଲେ । ଗୁପ୍ତ ସ୍ଥାନରେ ଲୁକ୍କାୟିତ ରହି ସୁବିଧାକ୍ରମେ ମୋଗଲମାନଙ୍କୁ ଅପ୍ରତ୍ୟାଶିତଭାବରେ ଆକ୍ରମଣ କରିବାଦ୍ୱାରା ସେ ଶତ୍ରୁର ମନରେ ଭୀଷଣ ଆତଙ୍କ ଉପସ୍ଥିତ କଲେ । ଯଦି ଯବନମାନେ କୌଣସି ସୂତ୍ରରେ ତାଙ୍କ ଅବସ୍ଥାନ-ସ୍ଥଳର ସନ୍ଧାନ କରିପାରୁଥିଲେ, ତାହାହେଲେ ସେ ଗୁପ୍ତତର ସ୍ଥାନକୁ ଯାଇ ସେଠାରୁ ସେମାନଙ୍କୁ ଆକ୍ରମଣ କରୁଥିଲେ । ଏପରି ଭାବରେ ବହୁ ବର୍ଷ ଅତୀତ ହେଲେ ସୁଦ୍ଧା ପ୍ରତାପସିଂହ ଧୃତ ହେଲେ-ନାହିଁ । ତାହାଙ୍କର ଏହି ଅଶ୍ରୁତପୂର୍ବ ରଣପାଣ୍ଡିତ୍ୟ ଦେଖି ମୋଗଲମାନେ ବିସ୍ମୟାର୍ଣ୍ଣବରେ ମଗ୍ନ ହୋଇଗଲେ ।

ଏହି ପାର୍ବତ୍ୟ ଯୁଦ୍ଧଗୁଡ଼ିକରେ ମେବାଡ଼ର ଭିଲ ପ୍ରଜାମାନେ ପ୍ରତାପଙ୍କର ପ୍ରଧାନ ସହାୟ ଥିଲେ । ଜୀବନକୁ ତୁଚ୍ଛ କରି, ଶତ୍ରୁର କୁଟିଳ ଭ୍ରୂକୁଟିପ୍ରତି ଦୃକ ପାତ ନ କରି, ସେମାନେ ସୁଦୀର୍ଘ ପଞ୍ଚବିଂଶ ବର୍ଷକାଳ ରାଣାଙ୍କ ନେତୃତ୍ୱରେ ମୋଗଲମାନଙ୍କ ସହିତ ଯୁଦ୍ଧ କରିଥିଲେ । ସେମାନଙ୍କ ଅସୀମ ସାହସ ଓ ଅତୁଳନୀୟ ରାଜଭକ୍ତି ଯୋଗେ ସହାୟସମ୍ବଳବିହୀନ

ପ୍ରତାପସିଂହ ମୋଗଲମାନଙ୍କୁ ବହୁବାର ଯୁଦ୍ଧରେ ପରାସ୍ତ କରିଥିଲେ । ତଥାପି ଶତ୍ରୁମାନେ ତାଙ୍କୁ ନିଶ୍ଚିନ୍ତରେ ରହିବାକୁ ଅବସର ଦେଲେନାହିଁ । ପାର୍ବତ୍ୟ ଦୁର୍ଗଗୁଡ଼ିକ ଗୋଟି ଗୋଟି ହୋଇ ପ୍ରତାପଙ୍କର ହସ୍ତଚ୍ୟୁତ ହେଲା । ମୋଗଲମାନଙ୍କ ଦ୍ୱାରା ପଦେ ପଦେ ବିତାଡ଼ିତ ହୋଇ ରାଣା ପର୍ବତର ଗୁହ୍ୟାଭ୍ୟନ୍ତରରେ ବାସ କରିବାକୁ ଲାଗିଲେ । ତଥାପି ନୈରାଶ୍ୟ କିମ୍ବା ଅବସାଦ ତାଙ୍କ ମନକୁ ସ୍ପର୍ଶ କରିନଥିଲା । ବିପଦ ଯାହାର ବନ୍ଧୁ, ମୃତ୍ୟୁ ଯାହାର କ୍ରୀଡ଼ାପୁତ୍ତଳିକା, ଶତ ଅକବର ତାହାର କୌଣସି ଅନିଷ୍ଟ କରିନପାରନ୍ତି ।

ପ୍ରତାପସିଂହଙ୍କ ଯୁଦ୍ଧର ବିବରଣଗୁଡ଼ିକ ଇତିହାସ-ପୃଷ୍ଠାରେ ପାଠ କଲେ ଅଭିବନୀୟ ବିସ୍ମୟାନନ୍ଦରେ ମନପ୍ରାଣ ପୂର୍ଣ୍ଣ ହୋଇଯାଏ । ତାହାଙ୍କର ପ୍ରତ୍ୟେକ ଯୁଦ୍ଧ ଗୋଟିଏ ଗୋଟିଏ କ୍ଷୁଦ୍ର ଉପନ୍ୟାସସଦୃଶ ପାଠକଙ୍କୁ କଳ୍ପନାତୀତ ଆନନ୍ଦ ପ୍ରଦାନକରେ । କେଉଁଠାରେ ଶତ୍ରୁ ତାଙ୍କୁ ଧରିବା ଉପରେ—କିନ୍ତୁ ପରମୁହୂର୍ତ୍ତରେ ରାଣାଙ୍କ ପ୍ରଚଣ୍ଡ ବିକ୍ରମ ଓ ଅଜେୟ ପ୍ରତ୍ୟୁତ୍ପନ୍ନମତିତ୍ୱ ତାଙ୍କୁ ଆସନ୍ନ ମୃତ୍ୟୁମୁଖରୁ ରକ୍ଷାକରିଅଛି । କେଉଁଠାରେ ସେ ଖାଇବାକୁ ବସିଅଛନ୍ତି—ଶତ୍ରୁ ଆଗମନର ସମ୍ବାଦ ପାଇ କଣ୍ଠସଞ୍ଚିତ ଆହାର୍ଯ୍ୟ ପରିତ୍ୟାଗପୂର୍ବକ ସ୍ଥାନାନ୍ତରକୁ ପଳାୟନ କରିଅଛନ୍ତି । କେଉଁ ଦୁର୍ଗରେ ବା ସେ ନିରାପଦରେ କିଛିକାଳ ରହିଅଛନ୍ତି—ଶତ୍ରୁର ବିଷାକ୍ତଶର କୂପଜଳକୁ ଦୂଷିତ କରିବାରୁ ଅଗତ୍ୟା ଦୁର୍ଗାନ୍ତରର ଆଶ୍ରୟ ଗ୍ରହଣ କରିଅଛନ୍ତି । ଏହି ଘଟନାବଳୀର ବିସ୍ତୃତ ବିବରଣୀ ଏହି କ୍ଷୁଦ୍ର ପୁସ୍ତିକାରେ ଅନାବଶ୍ୟକ ଭାବି ଆମ୍ଭେମାନେ ସେଥିରୁ କ୍ଷାନ୍ତ ହେଲୁଁ ।

ଅକବର ସ୍ୱପ୍ନରେ ସୁଦ୍ଧା ଭାବିନଥିଲେ ଯେ, ପ୍ରତାପସିଂହ ଏତେକାଳ ତାଙ୍କ ସହିତ ଯୁଦ୍ଧ କରିବେ । ପୃଥିବୀର ଅନ୍ୟ କୌଣସି

ସମ୍ରାଟ ବିପକ୍ଷରେ ଯୁଦ୍ଧ କରିବା ନିମନ୍ତେ ଯେତେ ସୈନ୍ୟବଳ ଆବଶ୍ୟକ, ଆକବର ତହିଁରୁ ବେଶି ପ୍ରତାପଙ୍କ ବିରୁଦ୍ଧରେ ପଠାଇଅଛନ୍ତି । ତଥାପି ମେବାଡ଼ର ମହାରାଣା ପରାଜୟ ସ୍ୱୀକାର କରିନାହାନ୍ତି । ଯେଉଁ ପ୍ରତାପ ଆକବରଙ୍କର ସୁଦ୍ଧା ଅଜେୟ, ସେ ମନୁଷ୍ୟ ନୁହନ୍ତି—ଦେବତା । ଆକବର ଗୁପ୍ତଚର ପଠାଇ ଅବଗତ ହେଲେ ଯେ, ପ୍ରତାପସିଂହ ରାଜୈଶ୍ୱର୍ଯ୍ୟ ପରିତ୍ୟାଗ କରି ଅତି ଦୀନଭାବରେ ପର୍ବତ-ଗହ୍ବରରେ ସପରିବାରରେ ବାସକରୁଅଛନ୍ତି । ଏହି ଦୈନ୍ୟରେ ସୁଦ୍ଧା ରାଣାଙ୍କ ମନରେ ଅସୀମ ଆନନ୍ଦ । ଏହି ସମ୍ବାଦ ପାଇ ଆକବର ପ୍ରତାପଙ୍କୁ ପ୍ରଶଂସା ନ କରି ରହି-ପାରିଲେନାହିଁ । ସେ ପ୍ରସଙ୍ଗକ୍ରମେ କହିଥିଲେ, "ସଂସାରରେ ରାଜ୍ୟ-ସମ୍ପତ୍ତି କିଛି ସ୍ଥିର ନୁହେ । ଦିଲ୍ଲୀର ଦିଗନ୍ତବିସ୍ତୃତ ମହାସାମ୍ରାଜ୍ୟ କାଳ-ଗର୍ଭରେ ବିଲୀନ ହୋଇପାରେ; କିନ୍ତୁ ପ୍ରତାପଙ୍କ ଅନନ୍ୟସାଧାରଣ ସ୍ୱଦେଶପ୍ରାଣତା ଯୁଗେ ଯୁଗେ ଅମରାକ୍ଷରରେ ଲିପିବଦ୍ଧ ରହିବ ।"



ଚତୁର୍ଦ୍ଦଶ ପରିଚ୍ଛେଦ

# ଭୀଷଣ ଅନ୍ତର୍ବିପ୍ଳବ



ପୂର୍ବ ପରିଚ୍ଛେଦରେ ବର୍ଣ୍ଣିତ ହୋଇଅଛି ଯେ, ମାନସିଂହଙ୍କ ଭଗିନୀର ପାଣିଗ୍ରହଣ କରି ସେଲିମ୍ ହିନ୍ଦୁବିଦ୍ୱେଷ ବିସ୍ମୃତ ହୋଇଥିଲେ। ମାନସିଂହଙ୍କ ପ୍ରତି ତାହାଙ୍କର ମମତା ଜାତ ହୋଇଥିଲା ସତ୍ୟ, ମାତ୍ର ମାନସିଂହଙ୍କ ଧର୍ମକୁ ସେ ଘୃଣା-ଚକ୍ଷୁରେ ଦେଖୁଥିଲେ। ବିଶେଷତଃ ଅକବରଙ୍କ ହିନ୍ଦୁ-ସଂପ୍ରୀତି ତାଙ୍କୁ ଭଲ ଲାଗୁନଥିଲା। ମାନସିଂହ ପ୍ରଥମେ ଭାବିଥିଲେ ଯେ, ସେଲିମ୍ ତାଙ୍କ ଉଦ୍ଦେଶ୍ୟ-ସାଧନରେ ପ୍ରଧାନ ସହାୟ ହେବେ। ଯୁବରାଜ ହିନ୍ଦୁ-ରମଣୀର ଗର୍ଭଜାତ ସନ୍ତାନ। ତା'ପରେ ରାଜପୁତ-ଲଲନାକୁ ସହଧର୍ମିଣୀ ରୂପେ ଗ୍ରହଣ କରିବାଦ୍ୱାରା ତାହାଙ୍କର ସହାନୁଭୂତି ବିଶେଷ ପରିମାଣରେ ହିନ୍ଦୁମାନଙ୍କ ପ୍ରତି ଆକୃଷ୍ଟ ହେବ। କିନ୍ତୁ ସେଲିମ୍‌ଙ୍କ ଆଚରଣରେ ତାହାଙ୍କର ଭ୍ରାନ୍ତି ଶୀଘ୍ର ବିଦୂରିତ ହୋଇଥିଲା। ଉଭୟଙ୍କ ମଧ୍ୟରେ ପୁନର୍ବାର ପରସ୍ପରର ମନୋମାଳିନ୍ୟ ଜାତ ହେଲା। ଅନୁଶୋଚନାର ତୀବ୍ର ଅନଳ ମାନସିଂହଙ୍କୁ ଦଗ୍ଧ କରିବାକୁ ଲାଗିଲା।

ଅକବରଙ୍କ ଦରବାରରେ ଅନେକ ବିଦ୍ୱାନ୍ ପଣ୍ଡିତ ସ୍ଥାନ ପାଇଥିଲେ। ସେମାନଙ୍କ ପରାମର୍ଶାନୁସାରେ କାର୍ଯ୍ୟ କରି ଅକବର ମୋଗଲସାମ୍ରାଜ୍ୟ ସଂସ୍ଥାପନ କରିବାକୁ ସମର୍ଥ ହୋଇଥିଲେ। ଅବୁଲ୍ ଫଜଲ୍ ତାଙ୍କ ପାରିଷଦ-ମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲେ। ମେବାଡ଼-ଯୁଦ୍ଧରେ ଜୟଲାଭ କରି

ସେଲିମ୍ ଏତେଦୂର ଗର୍ବାନ୍ଧ ହୋଇଥିଲେ ଯେ, ସମଗ୍ର ଜଗତ୍ ତାଙ୍କ ଚକ୍ଷୁରେ ତୃଣବତ୍ ପ୍ରତୀତ ହେଉଥିଲା । ମୋଗଲ-ଦରବାରରେ କାହାର ପ୍ରାଧାନ୍ୟ ସ୍ୱୀକାର କରିବାକୁ ତାହାଙ୍କର ପ୍ରବୃତ୍ତି ହେଉନଥିଲା । ମାନସିଂହଙ୍କୁ ସେ ଅନ୍ତରର ସହିତ ଘୃଣା କରୁଥିଲେ । ଅକବର ଏହା ଜାଣି ସୁଦ୍ଧା ସେଲିମ୍‌ଙ୍କୁ କୌଣସି ଶାସ୍ତି ଦେଉନଥିଲେ । କିନ୍ତୁ ଯେଉଁ ଦିନ ଅବୁଲ୍ ଫଜଲଙ୍କ ସହିତ ମଧ୍ୟ ଯୁବରାଜଙ୍କ ମନୋମାଳିନ୍ୟ ଜାତ ହେଲା, ଅକବର ଆଉ ନୀରବ ରହିପାରିଲେ ନାହିଁ । ପ୍ରଥମେ ସେଲିମ୍‌ଙ୍କୁ ଅନେକ ବୁଝାଇ କହିଲେ; କିନ୍ତୁ ଯେତେବେଳେ ସେ ଦେଖିଲେ ଯେ, ସେଲିମ୍ ତାଙ୍କ ଉପଦେଶର ବିପରୀତ କାର୍ଯ୍ୟ କରୁଅଛନ୍ତି, ତାଙ୍କ ହୃଦୟ କ୍ରୋଧରେ ଅଧୀର ହୋଇଗଲା । କ୍ରମେ ସେ ସେଲିମ୍‌ଙ୍କୁ ଶାସ୍ତି ଦେବାକୁ ଆରମ୍ଭ କଲେ । କିନ୍ତୁ ଏଥିରେ ମଧ୍ୟ କୌଣସି ସୁଫଳ ଫଳନଥିଲା । ବରଂ ଲାଭ ଏତିକି ହେଲା ଯେ, ସେଲିମ୍ ଅକବରଙ୍କ ବିରୁଦ୍ଧାଚରଣ କରିବାକୁ ଲାଗିଲେ । ସେନାପତି-ନିର୍ବାଚନସମୟରେ ସମ୍ରାଟଙ୍କ ଅବିମୃଶ୍ୟକାରିତା ଯୋଗେ ମୋଗଲ-ସାମ୍ରାଜ୍ୟର ଶାନ୍ତି ଏହିରୂପେ ଭଗ୍ନ ହୋଇଗଲା ।

ଜଣେ ଲୋକର ବେଶି ଶତ୍ରୁ ହେବା କଦାପି ବାଞ୍ଛନୀୟ ନୁହେ । ଦୁଇ କିମ୍ବା ତତୋଽଧିକ ବ୍ୟକ୍ତିର କୌଣସି ଗୋଟିଏ ସାଧାରଣ ଶତ୍ରୁ ଥିଲେ ସେମାନେ ନିଜର ମତଭେଦସବୁ ଭୁଲିଯାଇ ପରସ୍ପର ବନ୍ଧୁତା-ସୂତ୍ରରେ ଆବଦ୍ଧ ହୋଇଥାନ୍ତି । ସେଲିମ୍ ଏତିକି ବୁଝିନଥିଲେ ବୋଲି ଅବୁଲ୍ ଫଜଲଙ୍କ ସହିତ କଳହ ଆରମ୍ଭ କରିଥିଲେ । ମାନସିଂହ ଏବଂ ଅବୁଲ୍ ଫଜଲଙ୍କ ମଧ୍ୟରେ ଏଥିପୂର୍ବେ ମାନସିକ ମେଳ ଥିଲା କି ନାହିଁ କହିବା ଦୁଷ୍କର । କିନ୍ତୁ ସେଲିମ୍‌ଙ୍କ ଶତ୍ରୁତା ଆରମ୍ଭ ହେବା ଦିନରୁ ସେମାନଙ୍କ ମନର ଗତି ସମଦିଗାଭିମୁଖୀ ହେବାକୁ ଲାଗିଲା । କେଉଁ ଉପାୟରେ ସେଲିମ୍‌ଙ୍କ ସର୍ବନାଶ ସାଧିତ ହେବ, ଅକବରଙ୍କ ବନ୍ଧୁ-ଅସ୍ତ୍ରାସ୍ତ୍ର

ପ୍ରତିଷ୍ଠିତ ସାମ୍ରାଜ୍ୟ ବିପନ୍ନ ସୁରକ୍ଷିତ ହେବ, ଏହି ବିଷୟରେ ସ୍ଥିର ସିଦ୍ଧାନ୍ତ କରିବାନିମନ୍ତେ ସାମ୍ରାଜ୍ୟର ପ୍ରଧାନ ସେନାପତି ଓ ପ୍ରଧାନ ମନ୍ତ୍ରୀ ଏକାନ୍ତରେ ବସି ପରାମର୍ଶ କରିବାକୁ ଲାଗିଲେ । ସେଲିମଙ୍କ ବ୍ୟବହାରରେ ଅନ୍ୟ ଯେଉଁମାନେ ଉତ୍ତ୍ୟକ୍ତ ହୋଇଥିଲେ, ସେମାନେ ମଧ୍ୟ ମାନସିଂହ ଓ ଅବୁଲ୍ ଫଜଲଙ୍କ ସହିତ ମିଳିତ ହେଲେ । ନିଜ ପୁତ୍ର ବିରୁଦ୍ଧରେ ଏହିସବୁ ଷଡ଼ଯନ୍ତ୍ର ହେଉଥିବାର ସମ୍ବାଦ ପାଇ ଅକବର ନିରତିଶୟ ବ୍ୟଥିତ ହେଲେ । ତାହାଙ୍କର ଅପତ୍ୟବତ୍ସଳ ହୃଦୟ ଦୁଃଖଭାରରେ ଅବସନ୍ନ ହୋଇଗଲା । ସେଲିମଙ୍କୁ ନିକଟକୁ ଡାକି ସେ ଅତି ଆଦରରେ ନାନା-ପ୍ରକାରେ ବୁଝାଇ କହିଲେ । ସାମ୍ରାଜ୍ୟର ପ୍ରଧାନ କର୍ମଚାରୀମାନଙ୍କ ସନ୍ତୁଷ୍ଟ କରିବାର ନିଜର ଭାବୀ ଅମଙ୍ଗଳର ସୃଷ୍ଟି କରିବା କଦାପି ବାଞ୍ଛନୀୟ ନୁହେଁ । କିନ୍ତୁ ସେଲିମ୍ ଶୁଣିଲେ ତ ହେବ ? ମନର ପୂର୍ବାବସ୍ଥାନୁଯାୟୀ ଅନେକ ସମୟରେ ବିଷୟର ଗ୍ରାହ୍ୟାଗ୍ରାହ୍ୟତା ନିରୂପିତ ହୋଇଥାଏ । ସେଲିମ୍ ସାମ୍ରାଜ୍ୟର ଉତ୍ତରାଧିକାରୀ, ଅକବରଙ୍କ ଅନ୍ତେ ସେ ନିଜେ ସିଂହାସନୋପରି ଉପବିଷ୍ଟ ହେବେ, ସମ୍ରାଟ୍ ତାଙ୍କ ପକ୍ଷ ନନେଇ ସାମାନ୍ୟ ଉଚ୍ଛିଷ୍ଟଭୋଜୀ କର୍ମଚାରୀମାନଙ୍କୁ ଆଶ୍ରୟ ଦେଉଅଛନ୍ତି । ଯେତେ ଦୋଷ, ସବୁ ସେଲିମଙ୍କର; ଆଉ ଅବୁଲ୍ ଫଜଲ୍ ଓ ମାନସିଂହ ସାମ୍ରାଜ୍ୟର ମହୋପକାରୀ ! କ୍ରୋଧ ଓ ଅଭିମାନରେ ଯୁବରାଜଙ୍କ ନୟନକୋଣରୁ ଲୋତକଧାରା ନିର୍ଗତ ହେଲା । ଏହି ଦୃଶ୍ୟ କ'ଣ ପୁତ୍ରଗତପ୍ରାଣ ଅକବର ସହି ପାରନ୍ତି ? ସେଲିମଙ୍କୁ ଅନ୍ତଃପୁର ନିକଟକୁ ଡାକି ରାଜନୀତିର ଗୂଢ଼ ତତ୍ତ୍ୱବିଷୟରେ ଅନେକ ସଦୁ-ପଦେଶ ଦେଲେ । ଉଦ୍ଦେଶ୍ୟର ସିଦ୍ଧିପର୍ଯ୍ୟନ୍ତ କର୍ମଚାରୀମାନଙ୍କୁ ହାତ ଅସ୍ତ୍ରରେ ରଖିବା ଉଚିତ । ଅସନ୍ତୁଷ୍ଟ ସିଦ୍ଧ ହେଲେ ସେମାନେ ଜୀର୍ଣ୍ଣ ପାଦୁକା-ପ୍ରାୟେ ପରିତ୍ୟକ୍ତ ହୋଇପାରନ୍ତି । କିନ୍ତୁ ସେଲିମ୍ ଯେ ଏତେ ଦୀର୍ଘକାଳ ଅପେକ୍ଷା କରିବାକୁ ଅନିଚ୍ଛୁକ । ସେ ପ୍ରଥମେ ପ୍ରମାଣିତ କରିବାକୁ ଚାହାନ୍ତି

ଯେ, ସାମ୍ରାଜ୍ୟରେ ତାହାଙ୍କର ସ୍ତ୍ରତ୍ତ୍ୱ ଅପ୍ରତିହତ । ଏଥିପାଇଁ ସେ ସାମ୍ରାଜ୍ୟପ୍ରାପ୍ତିରୁ ବଞ୍ଚିତ ହେଲେ ସୁଦ୍ଧା ଅଣୁମାତ୍ର ଦୁଃଖିତ ହେବେନାହିଁ ।

କୁମାରମଣିଙ୍କର ଏହି ଅବସ୍ଥା ଦେଖି ଆକବରଙ୍କ ହୃଦୟ କ୍ରୋଧାଗ୍ନିରେ ପ୍ରଜ୍ୱଳିତ ହେବାକୁ ଲାଗିଲା । ଅତ୍ୟଧିକ ପୁତ୍ର-ସ୍ନେହର ବଶବର୍ତ୍ତୀରେ ବିଶାଳ ମୋଗଲ-ସାମ୍ରାଜ୍ୟ ହରାଇବାକୁ ତାହାଙ୍କର ପ୍ରବୃତ୍ତି ହେଲାନାହିଁ । ସେଲିମ୍ ରାଜଧାନୀରୁ ନିର୍ବାସିତ ହେଲେ । ମାନସିଂହ ଓ ଅବୁଲ ଫଜଲଙ୍କ ହୃଦୟ ଆନନ୍ଦରେ ଉତ୍ଫୁଲ୍ଲ ହେଲା ।

ଅତଃପର ସେଲିମଙ୍କ ପୁତ୍ର ଓ ମାନସିଂହଙ୍କ ଭଣିନେୟ କୁମାର ଖସରୁଙ୍କ ଉପରେ ସମସ୍ତଙ୍କ ଦୃଷ୍ଟି ନିପତିତ ହେଲା । ସେଲିମଙ୍କୁ ଯୌବ-ରାଜ୍ୟରୁ ବଞ୍ଚିତ କରି ତାଙ୍କ ପୁତ୍ରଙ୍କୁ ଉକ୍ତ ପଦରେ ଅଧିଷ୍ଠିତ କରିବା ନିମନ୍ତେ ମାନସିଂହ ପ୍ରଭୃତି ପ୍ରବଳ ଆନ୍ଦୋଳନ ଆରମ୍ଭ କଲେ । ଖସରୁଙ୍କ ସୁମଧୁର ବ୍ୟବହାରରେ ହିନ୍ଦୁ ଓ ମୁସଲମାନ ଉଭୟ ଜାତିର ଲୋକେ ସନ୍ତୁଷ୍ଟ ଥିଲେ । ମାନସିଂହଙ୍କ ଆଦର୍ଶ ଭାରତ-ସମ୍ରାଟର ଲକ୍ଷଣଗୁଡ଼ିକ ତାଙ୍କଠାରେ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଥିଲା । ସ୍ୱୟଂ ଆକବର ମଧ ଖସରୁଙ୍କୁ ଯୌବରାଜ୍ୟ ଦେବା ନିମନ୍ତେ ଅଙ୍ଗୀକୃତ ହେଲେ ।

ସେଲିମଙ୍କ କ୍ରୋଧାଗ୍ନିରେ ଆହୁତି ପ୍ରଦତ୍ତ ହେଲା । ଯୁବରାଜ ପିତାର ଜୀବିତାବସ୍ଥାରେ ପୁତ୍ରର ଯୌବରାଜ୍ୟପ୍ରାପ୍ତି ସମ୍ପୂର୍ଣ୍ଣ ଅସମ୍ଭବ । ସେଲିମ୍ ଏଥିର ପ୍ରତିକାର ନ କରି କଦାପି ଛାଡ଼ିବେ ନାହିଁ । ଲକ୍ଷ୍ନୌ ନଗରରେ ଅବସ୍ଥାନ କରି ସେ ଆକବରଙ୍କ ବିରୁଦ୍ଧରେ ବିଦ୍ରୋହର ଆୟୋଜନ କରିବାକୁ ଲାଗିଲେ । ପିତୃ-ଦରବାର ସହିତ ପ୍ରତିଯୋଗିତା କରିବା ନିମନ୍ତେ ଉକ୍ତ ନଗରରେ ଗୋଟିଏ ସ୍ୱତନ୍ତ୍ର ଦରବାର ପ୍ରତିଷ୍ଠିତ ହେଲା । ସେଲିମ୍ ସ୍ୱାଧୀନ ନୃପତିପ୍ରାୟେ ସେଠାରେ ରାଜକାର୍ଯ୍ୟ ପରିଚାଳନ କରିବାକୁ ଲାଗିଲେ ।

## ପଞ୍ଚଦଶ ପରିଚ୍ଛେଦ



# କ୍ଷଣିକ ଦୁର୍ବଳତା



ଅକବରଙ୍କ ଦରବାରର ଏହି ବିଶୃଙ୍ଖଳା ସତ୍ତ୍ୱେ ପ୍ରତାପସିଂହ ଅପହୃତ ରାଜ୍ୟର ପୁନରୁଦ୍ଧାରରେ ସମର୍ଥ ହୋଇନଥିଲେ । ଯୁବରାଜଙ୍କ ବିରୁଦ୍ଧାଚରଣଯୋଗେ ଅକବରଙ୍କ ମାନସିକ ଶାନ୍ତି ବିଦୂରିତ ହୋଇଥିଲେ ସୁଦ୍ଧା ଉକ୍ତ ବିଦ୍ରୋହର ନିବାରଣ ନିମନ୍ତେ କୌଣସି ସେନାବଳର ଆବଶ୍ୟକତା ହୋଇନଥିଲା । ସେଥିପାଇଁ ସେ ଅକବର ଘଷ୍ଟୀକୁ ଏକାବେଳକେ ସୈନିକଶୂନ୍ୟ କରିଥିଲେ, ଏମନ୍ତ ନୁହେ । ବିଦ୍ରୋହୀ ସେଲିମ୍ ଅବଶ୍ୟକ ହେଲେ ଅସ୍ତ୍ରଧାରଣ କରିପାରନ୍ତି— ସମ୍ରାଟଙ୍କୁ ଯୁଦ୍ଧରେ ପରାସ୍ତ କରି ନିଜେ ସିଂହାସନାରୂଢ଼ ହେବାକୁ ପ୍ରବଳ ଆକାଂକ୍ଷା ପୋଷଣ କରିପାରନ୍ତି । ଏପରି ଅବସ୍ଥାରେ ଅକବର କିପରି ସମସ୍ତ ବାଦଶାହୀ ସେନାକୁ ପ୍ରତାପଙ୍କ ବିରୁଦ୍ଧରେ ନିଯୋଜିତ କରିବେ ? ତଥାପି ତାହାଙ୍କ ବିରୁଦ୍ଧରେ ଛିଡ଼ା ହେବା ପ୍ରତାପଙ୍କ ପକ୍ଷରେ କ୍ରମେ ଅସମ୍ଭବ ହୋଇପଡ଼ିଲା । ରାଜ୍ୟ ନାହିଁ, ଧନ ନାହିଁ, ଖାଇବାକୁ ସାମାନ୍ୟ ତଣ୍ଡୁଳ ମଧ୍ୟ ନାହିଁ । କେବଳ ହୃଦୟର ବଳରେ ଆଉ କେତେକାଳ ପ୍ରତାପ ଯୁଦ୍ଧ କରିବେ ?

ପ୍ରତାପସିଂହ ନିଜ ନିମନ୍ତେ ଅଣୁମାତ୍ର ଚିନ୍ତିତ ନ ଥିଲେ । ବରଂ ଅଭାବ ବିରୁଦ୍ଧରେ ଯୁଦ୍ଧ କରିବାକୁ ସେ ସୁଖକର ମଣୁଥିଲେ । କିନ୍ତୁ ସେ ସନ୍ନ୍ୟାସ ଅବଲମ୍ବନ କଲେ ସୁଦ୍ଧା ସନ୍ନ୍ୟାସୀ ନଥିଲେ— ସଂସାରର ମାୟା-

ବନ୍ଧନ ଛିନ୍ନ କରିବାକୁ ସମର୍ଥ ହୋଇନଥିଲେ । ତାହାଙ୍କର ସନ୍ନ୍ୟାସରେ ଏବମ୍ଭୂତ ତ୍ୟାଗର ଆବଶ୍ୟକତା ମଧ୍ୟ ନଥିଲା । ସ୍ତ୍ରୀ ପୁରୁଷଙ୍କ ଭରଣପୋଷଣ-ଚିନ୍ତା ତାଙ୍କୁ ଅନେକ ସମୟରେ ଅଧୀର କରୁଥିଲା । ଯେଉଁ ପ୍ରଜାମାନେ ଜୀବନର ସର୍ବସୁଖରେ ଜଳାଞ୍ଜଳି ଦେଇ ତାଙ୍କ ସହିତ ଅରଣ୍ୟରେ ବାସ କରୁଥିଲେ, ସେମାନଙ୍କ ଶୋଚନୀୟ ଦଶା ଦେଖି ତାଙ୍କ ହୃଦୟ ବିଷାଦରେ ପୂର୍ଣ୍ଣ ହେଉଥିଲା । ପ୍ରତାପସିଂହ ଏତେ ତ୍ୟାଗ ସ୍ୱୀକାର କଲେ ସୁଦ୍ଧା ଅଭୀଷ୍ଟସିଦ୍ଧିର ସମ୍ମୁଖୀନ ହୋଇପାରିଲେ ନାହିଁ । ମେବାଡ଼ର ଦୁର୍ଦ୍ଦଶା-ରାଶି ଦିନୁଦିନ ଘନୀଭୂତ ହେବାକୁ ଲାଗିଲା ।

ମେବାଡ଼ର ଏହି ଦୁର୍ଦ୍ଦିନ ସମୟରେ ଶକ୍ତସିଂହ ରନ୍‌ଥୋର୍ ପ୍ରଭୃତି କେତେକ ଦୁର୍ଗ ଶତ୍ରୁହସ୍ତରୁ ଜୟକରି ଅଗ୍ରଜଙ୍କ ଚରଣତଳେ ସମର୍ପଣ କରିବାକୁ ଇଚ୍ଛୁକ ହୋଇଥିଲେ । କିନ୍ତୁ ପ୍ରତାପସିଂହ ସେଥିରେ ସମ୍ମତ ହେଲେ ନାହିଁ । ଶକ୍ତସିଂହଙ୍କ ବିଜୟ-ଗୌରବରେ ହର୍ଷୋତ୍‌ଫୁଲ୍ଲ ହୋଇ ସେ କହିଲେ, "ଭାଇ ! ତୁମ୍ଭର ବିଜିତ ଦୁର୍ଗ ମତେ କାହିଁକି ଦେବ ? ତୁମ୍ଭେ ନିଜେ ସେଠାରେ ସ୍ୱାଧୀନଭାବରେ ରାଜତ୍ୱ ବିସ୍ତାର କର । ମୁଁ ଅରଣ୍ୟରେ ଥାଇ ଶତ୍ରୁକୁ ଆକ୍ରମଣ କରିବି; ତୁମ୍ଭେ ଦୁର୍ଗମଧ୍ୟରେ ଥାଇ ଶତ୍ରୁକୁ ବାଧାଦିଅ । ଦୁଇଆଡ଼ୁ ବାଧା ନପାଇଲେ ଯବନ ପରାଜୟ ସ୍ୱୀକାର କରିବନାହିଁ ।" ପ୍ରତାପସିଂହଙ୍କ ଏହି ଉତ୍ତର ଶୁଣି ଶକ୍ତସିଂହ ଅବାକ୍ ହୋଇ ଅଗତ୍ୟା ନିଜର ବିଜିତ ଦୁର୍ଗକୁ ଫେରି ଯିବାକୁ ବାଧ୍ୟ ହୋଇ-ଥିଲେ ।

ଥରେ ପ୍ରତାପସିଂହ ପୁତ୍ରକନ୍ୟା ପ୍ରଭୃତିଙ୍କ ସହ ଅରଣ୍ୟମଧ୍ୟବର୍ତ୍ତୀ ଗୋଟିଏ ଛାୟା-ଶୀତଳ ସ୍ଥାନରେ ଉପବେଶନ କରି ମେବାଡ଼ର ଦୁର୍ଭାଗ୍ୟ-

ବିଷୟରେ ଘୋର ଚିନ୍ତାରେ ମଗ୍ନ ଥିଲେ । ନିକଟରେ ସ୍ୱଚ୍ଛ-ନୀର ସୁଗମ୍ଭୀର ପର୍ବତ-ସ୍ରୋତସ୍ୱିନୀ ତରୁମୂଳ ଧୌତ କରି ସୁମଧୁର କଳକଳନାଦରେ ପ୍ରବାହିତ ହେଉଥିଲା । ତନ୍ନୀର ଶୀକରସିକ୍ତ ଅନିଳ ମୃଦୁମନ୍ଦଭାବରେ ପ୍ରବାହିତ ହୋଇ ମେବାଡ଼ର ରାଜପରିବାରର ଶୁଶ୍ରୂଷାରେ ନିଯୁକ୍ତ ଥିଲା । ଶିଶୁ ପୁତ୍ରକନ୍ୟାଗଣ ଶୀତଳଛାୟା ତରୁମୂଳରେ ବସି ନୀବାର-ତଣ୍ଡୁଳ-ନିର୍ମିତ ପିଷ୍ଟକଭକ୍ଷଣରେ ନିରତ ଥିଲେ । ରାଣା ନିଜର ଏହି ଅସହନୀୟ ଦୁର୍ଦ୍ଦଶା ଅବଲୋକନ କରି ଶୋକରେ ଅଧୀର ହୋଇଗଲେ । ତଦୂର୍ଦ୍ଧ୍ୱରେ ନୈସର୍ଗୀର ତାପସୀ ରୂପ ତାହାଙ୍କର ଦୃଷ୍ଟିପଥାରୂଢ଼ ହେଲା । ସେ ବ୍ୟଥିତ ମନରେ ନିଜର ତଥା ସ୍ୱଦେଶର ଦୁର୍ଦ୍ଦଶା ବିଷୟରେ ଚିନ୍ତା କରିବାକୁ ଲାଗିଲେ । ସ୍ୱାଧୀନତା-ରାଣୀଙ୍କ ଅନୁକମ୍ପା-ପ୍ରାପ୍ତିନିମନ୍ତେ ପ୍ରତାପସିଂହ ସର୍ବସ୍ୱ ପରିତ୍ୟାଗ କରିଅଛନ୍ତି—ଅନନ୍ୟସାଧାରଣ ନିଷ୍ଠା ସହକାରେ ସ୍ୱୀୟ କର୍ତ୍ତବ୍ୟ ପାଳନ କରିଅଛନ୍ତି । ତଥାପି ସ୍ୱାଧୀନତା-ରାଣୀ ତାଙ୍କ ପ୍ରତି ପ୍ରସନ୍ନ ହେଲେନାହିଁ । ତାହାଙ୍କର ସମସ୍ତ ପରିଶ୍ରମ ବ୍ୟର୍ଥ ହୋଇଅଛି । ପୃଥିବୀର ଲୋକେ କି ସୁଖରେ ସ୍ୱାଧୀନତାର ମଧୁମୟ କ୍ରୋଡ଼ରେ କାଳଯାପନ କରୁଅଛନ୍ତି—ହତଭାଗ୍ୟ ପ୍ରତାପ ଏତେ ଚେଷ୍ଟା କରି ସୁଦ୍ଧା ସେ ସୁଖରୁ ବଞ୍ଚିତ ହୋଇଅଛନ୍ତି । ଅବଶ୍ୟ ସେ କାହାରି ଅଧୀନତା ସ୍ୱୀକାର କରିନାହାନ୍ତି, କିନ୍ତୁ ଆଉ କେତେ ଦିନ ନିଜ ସ୍ୱାଧୀନତା ରକ୍ଷିପାରିବେ କି ?

ପ୍ରତାପସିଂହ ନିବିଷ୍ଟ ମନରେ ଏବମ୍ଭୂତ ଚିନ୍ତାରେ ନିମଗ୍ନ ଥିବା ସମୟରେ ହଠାତ୍ ଗୋଟିଏ କରୁଣ ଚିତ୍କାର-ଧ୍ୱନି ତାଙ୍କ କର୍ଣ୍ଣ-କୁହରରେ ପ୍ରବେଶ କଲା । ଚିତ୍କାରର କାରଣ-ଜିଜ୍ଞାସୁ ହୋଇ ସେ ଦେଖିଲେ ଯେ, ଗୋଟିଏ ବନ୍ୟ ମାର୍ଜାର ତାହାଙ୍କର କନିଷ୍ଠ-କନ୍ୟା-ହସ୍ତରୁ ନୀବାର ପିଷ୍ଟକ ନେଇ ଦ୍ରୁତଗତିରେ ପଳାୟନ କରୁଅଛି । ନୈରାଶ୍ୟ-ଗ୍ରସ୍ତ-ପ୍ରାଣ ପ୍ରତାପ-

ହିଂସ୍ର ଲୁବ୍ଧ ମାର୍ଜାର-ହସ୍ତରୁ ସୁଦ୍ଧା ପିଷ୍ଟକୋଦ୍ଧାର କରିପାରିଲେନାହିଁ । ପୁତ୍ରକନ୍ୟାଗଣଙ୍କ ବିଳାପ-ଧ୍ୱନିରେ ତାହାଙ୍କର କର୍ଣ୍ଣ ବିଦୀର୍ଣ୍ଣ ହୋଇଗଲା । ପ୍ରତାପସିଂହ ଜୀବନରେ ଅନେକ କଷ୍ଟ ସହ୍ୟ କରିଅଛନ୍ତି—ମରଣକୁ ତୁଚ୍ଛ କରି ଯୁଦ୍ଧକ୍ଷେତ୍ରରେ ଶତ୍ରୁ ସହିତ ଯୁଦ୍ଧ କରିଅଛନ୍ତି—ଅନାହାରରେ, ଅନିଦ୍ରାରେ ବହୁଦିନ ଅତିବାହିତ କରିଅଛନ୍ତି । ତଥାପି ସ୍ୱପ୍ନରେ ସୁଦ୍ଧା କେବେ ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟିନଥିଲା; କିନ୍ତୁ ଏହି ସାମାନ୍ୟ ଅଥଚ ହୃଦୟବିଦାରକ ଘଟଣାରେ ସେ ଏତେଦୂର ଅଧୀର ହୋଇଗଲେ ଯେ, ତାହାଙ୍କର ସମସ୍ତ ଆଶାଭରସା ଏକାବେଳକେ ବିଲୁପ୍ତ ହୋଇଗଲା । ସ୍ୱାଧୀନତା-ରାଣୀଙ୍କ ପରିତୁଷ୍ଟି ସକାଶେ ପ୍ରତାପସିଂହ ତ୍ୟାଗ-ପଥରେ ବହୁ-ଦୂର ଅଗ୍ରସର ହୋଇସାରିଛନ୍ତି । ସ୍ୱୀୟ ପୁତ୍ରକନ୍ୟା ତଥା ପ୍ରଜାଗଣଙ୍କୁ ଅଦ୍ଭୁତ କଷ୍ଟ ଦେଇ ଆଉ କେତେଦୂର ଅଗ୍ରସର ହେବେ ? ନିଜେ କଷ୍ଟ ସହି ପାରନ୍ତି ବୋଲି ସ୍ୱୀୟ ଆଶ୍ରିତମାନଙ୍କୁ ମଧ୍ୟ କାହିଁକି ଏପରି କଷ୍ଟ ଦେଉଥିବେ ? ରାଜସନ୍ତାନଗଣଙ୍କ ରାଜଭୋଗରେ ଜଳାଞ୍ଜଳି ପ୍ରଦତ୍ତ ହୋଇଅଛି—ମେବାଡ଼ର ମହାରାଣୀଙ୍କ ସୁକୁମାର ଅଙ୍ଗ ଜୀର୍ଣ୍ଣଶୀର୍ଣ୍ଣ ହୋଇ-ଅଛି । ଅନିଦ୍ରା ଓ ଅନାହାରରେ ସମସ୍ତଙ୍କ ଚକ୍ଷୁ କୋଟରଗତ ହୋଇଅଛି । ଏସବୁର କାରଣ କିଏ ?—ସ୍ୱୟଂ ପ୍ରତାପ । ହାୟ, ସ୍ୱୀୟ ହଠକାରିତା ନିମନ୍ତେ ପ୍ରତାପସିଂହ ପରିବାରବର୍ଗଙ୍କୁ ଏତେଦୂର କଷ୍ଟ ଦେଉଅଛନ୍ତି—ପିତା ହୋଇ ପୁତ୍ରକନ୍ୟାଙ୍କର ଲାଳନପାଳନ କରିପାରୁନାହାନ୍ତି, ଭର୍ତ୍ତା ହୋଇ ଭାର୍ଯ୍ୟାର ଭରଣପୋଷଣରେ ଅକ୍ଷମ ହୋଇଅଛନ୍ତି, ରାଜା ହୋଇ ପ୍ରଜାମାନଙ୍କୁ ହତସର୍ବସ୍ୱ କରିଅଛନ୍ତି ! ! ପ୍ରତାପଙ୍କ ଜୀବନ ନିରର୍ଥକ ହୋଇ-ଅଛି । ମସ୍ତଚକାର ପଶ୍ଚାଦ୍ଭାବନ କରି ସେ ସମ୍ପୂର୍ଣ୍ଣଭାବରେ ପ୍ରତାରିତ ହୋଇ-ଅଛନ୍ତି । ଆଉ ବେଶି ଦୂର ଅଗ୍ରସର ହେବା ଉଚିତ ନୁହେଁ । ତେବେ କରିବେ କଣ ? ଆକବରଙ୍କ ଶରଣାପନ୍ନ ହେବେ ?—ପ୍ରତାପସିଂହ ଆଉ

ସ୍ୱରଯାଉନ୍ନେନାହିଁ—ବଳଗନ୍ତବିସ୍ତୃତ ନୀଳାକାଶ ସହସା ଯେପରି କକ୍ଷଚ୍ୟୁତ ହୋଇ ତାହାଙ୍କର ମସ୍ତକୋପରି ନିପତିତ ହେଲା । ନୟନ-ଯୁଗଳରୁ ଅବିରଳ ଧାରାରେ ବେଦନାଶ୍ରୁ ବିନିର୍ଗତ ହେବାକୁ ଲାଗିଲା ।

ମହାରାଣାଙ୍କର ଏହି ଅବସ୍ଥା ଦେଖି ସର୍ଦ୍ଦାରମାନେ ତାଙ୍କୁ ଘେରି-ପକାଇଲେ । ମେବାଡ଼ର ଦୁର୍ଦ୍ଦଶାବିଷୟ ପୁନର୍ବାର ପୁଙ୍ଖାନୁପୁଙ୍ଖରୂପେ ଆଲୋଚିତ ହେଲା । ଉପସ୍ଥିତ ଅବସ୍ଥାଦୃଷ୍ଟିରେ ଅଧିକାଂଶ ସର୍ଦ୍ଦାର ଆକବରଙ୍କ ସହିତ ସନ୍ଧି କରିବାକୁ ସ୍ଥିର କରି ପ୍ରତାପଙ୍କ ସମ୍ମତି-ପ୍ରାର୍ଥୀ ହେଲେ । ଶୋକସନ୍ତପ୍ତ ରାଣାଙ୍କ ମୁଖରୁ ବାକ୍‌ନିଷ୍ପତ୍ତି ସୁଦ୍ଧା ହୋଇପାରିଲା ନାହିଁ । ବନ୍ଧୁ ତର୍କବିତର୍କପରେ ସନ୍ଧିପତ୍ର ଲିଖିତ ହେଲା, ଏବଂ ରାଣା ଅନିଚ୍ଛାସତ୍ତ୍ୱେ ଉକ୍ତ ସନ୍ଧିପତ୍ରରେ ସ୍ୱାକ୍ଷର କଲେ । ପ୍ରତାପସିଂହଙ୍କ ମସ୍ତକଉପରୁ ସ୍ୱାଧୀନତା-ରାଣୀ ଓହ୍ଲାଇ ଆସିଲେ । ଅଦୂରେ ଜୀର୍ଣ୍ଣାମ୍ବର । ଶୀର୍ଣ୍ଣକଳେବରା ମେବାଡ଼ର ମହାରାଣୀ ଏ ଭୟାବହ ଦୃଶ୍ୟ ଦେଖି ବିକଳରେ ରୋଦନ କରିବାକୁ ଲାଗିଲେ । ତାହାଙ୍କର ମନେ ହେଲା, ଯେପରି ତାହାଙ୍କର ହୃତ୍‌ପିଣ୍ଡରୁ ବନ୍ଧୁ-ଯତ୍ନ-ରକ୍ଷିତ ହୃଦୟ ସହସା ଅପହୃତ ହେଲା—ମେବାଡ଼ର ସ୍ୱାଧୀନତା-ରଙ୍ଗମଞ୍ଚରେ ଅତି ନିର୍ମମଭାବରେ ସହସା ଯବନିକା ପାତ ହେଲା ।



## ଷୋଡଶ ପରିଚ୍ଛେଦ



# ପୃଥ୍ୱୀରାଜଙ୍କ ପତ୍ର



ରାଣା ପ୍ରତାପସିଂହଙ୍କ ସନ୍ଧି-ପତ୍ର ଯଥାସମୟରେ ଦିଲ୍ଲୀର ଦରବାରକୁ ଆନୀତ ହେଲା । ସନ୍ଧି-ପତ୍ର ପାଠ କରି ଆକବର ହର୍ଷ ଏବଂ ବିସ୍ମୟରେ ପୂର୍ଣ୍ଣ ହୋଇଗଲେ । ରଣଶ୍ରାନ୍ତ ପ୍ରତାପସିଂହ ଯେ ସନ୍ଧିନିମନ୍ତେ ପ୍ରାର୍ଥୀ ହୋଇ-ପାରନ୍ତି, ଏକଥା ବିଶ୍ୱାସ କରିବାକୁ ସୁଦ୍ଧା ତାହାଙ୍କର ପ୍ରବୃତ୍ତି ହେଲାନାହିଁ । ମେବାଡ଼ର ସ୍ୱାଧୀନତା-ରକ୍ଷା ଯାହାଙ୍କ ଜୀବନର ଏକମାତ୍ର ବ୍ରତ, ସେହି ପ୍ରତାପସିଂହ ପ୍ରତିକୂଳ ଅବସ୍ଥାର ତୀବ୍ର ତାଡ଼ନାରେ ଏତେଦୂର ଅଧୋଗତ ହୋଇନପାରନ୍ତି । ତାହାହେଲେ ଏ ସନ୍ଧିପତ୍ର ଲେଖିଲା କିଏ ? ଆକବରଙ୍କୁ ସନ୍ଧିର ପ୍ରଲୋଭନ ଦେଖାଇ ପ୍ରତାପସିଂହ ନୂତନ-ବଳ-ସଞ୍ଚୟରେ ବ୍ୟାପୃତ ରହିନାହାନ୍ତି ତ ? କିନ୍ତୁ ମେବାଡ଼ର ରାଣା ଏପରି ଗର୍ହିତ ଉପାୟ ଅବଲମ୍ବନ କରି ଆତ୍ମରକ୍ଷାନିମନ୍ତେ କଦାପି ପ୍ରୟାସୀ ହେବେ-ନାହିଁ । ତାହାହେଲେ ସନ୍ଧିପତ୍ରର ପ୍ରତ୍ୟେକ ଅକ୍ଷର ବିଶ୍ୱାସଯୋଗ୍ୟ । ସୁଦୀର୍ଘ ପଞ୍ଚବିଂଶତି ବର୍ଷକାଳ ବିପତ୍ତିବିରୁଦ୍ଧରେ ସଂଗ୍ରାମ କରି ରାଣାଙ୍କର ଧୈର୍ଯ୍ୟଚ୍ୟୁତି ଘଟିଅଛି । ବର୍ତ୍ତମାନ ଜୀବନର ଅବଶିଷ୍ଟ ସମୟ ସୁଖ-ଶାନ୍ତିରେ କଟାଇବା ନିମନ୍ତେ ସେ ସନ୍ଧିପ୍ରାର୍ଥୀ ହୋଇଅଛନ୍ତି । ଆକବରଙ୍କ ମହାଭାରତ-ସାମ୍ରାଜ୍ୟ-ସ୍ଥାପନର ଏକମାତ୍ର ଅନ୍ତରାୟ ଦୂର ହୋଇଅଛି । ଅତି ଅକାରଣ ରକ୍ତପାତରେ ଲାଭ କଣ ? ପ୍ରତାପଙ୍କ ସହିତ ସନ୍ଧିସ୍ଥାପନ

କରିବା ନିମନ୍ତେ କୃତନିଶ୍ଚୟ ହୋଇ ଅକବର ମେବାଡ଼-ଦୂତଙ୍କୁ ଯଥୋଚିତ ସତ୍କାରସହକାରେ ବିଦାୟ ଦେଲେ । ତାଙ୍କ ହୃଦୟରୁ ଦୁଶ୍ଚିନ୍ତାର ଗୁରୁଭାର ଅପସାରିତ ହେଲା ।

ରାଣାଙ୍କ ସନ୍ଧିପ୍ରାର୍ଥନା-ବିଷୟ ଅନତିବିଲମ୍ବରେ ଦିଲ୍ଲୀର ଗୃହେ ଗୃହେ ପ୍ରଚାରିତ ହେଲା । ଦିଲ୍ଲୀର ନରନାରୀ ଏ ସମ୍ବାଦ ଶ୍ରବଣକରି ହର୍ଷୋତ୍ଫୁଲ୍ଲ ମାନସରେ ବିରାଟ ଉତ୍ସବର ଆୟୋଜନ କରିବାକୁ ଲାଗିଲେ । ସନ୍ଧିଦିବସର ସ୍ମୃତିରକ୍ଷାନିମିତ୍ତ ରାଜକୋଷରୁ ଅଜସ୍ର ଧନ ବ୍ୟୟିତ ହେଲା । ଅତି ଅଳ୍ପକାଳମଧ୍ୟରେ ସୁସଜ୍ଜିତା ଦିଲ୍ଲୀ ମହାନଗରୀ ଅମରାବତୀ ସହିତ ପ୍ରତିଯୋଗିତା କରିବାକୁ ଉପକ୍ରମ କଲା ।

ସନ୍ଧିର ସର୍ତ୍ତବିଷୟ ଆଲୋଚନା କରିବା ନିମନ୍ତେ ବାଦସାହୀ ଦରବାର ଆହୂତ ହେଲା । ରାଜା, ମହାରାଜା, ଉମରାଓ, କାଜି ପ୍ରଭୃତି ପାରିଷଦଗଣ ଯଥାସମୟରେ ଦରବାର-ଭବନରେ ସମୁପସ୍ଥିତ ହେଲେ । ସମସ୍ତଙ୍କ ମନରେ ଆନନ୍ଦ ଓ ଉତ୍ସାହ । ପ୍ରତାପଙ୍କ ପରି ଶତ୍ରୁର ପରାଜୟରେ କାହାର ମନ ଆନନ୍ଦ-ସାଗରରେ ମଗ୍ନ ନ ହେବ ?

ଏହି ସାର୍ବଜନୀନ ଆନନ୍ଦମଧ୍ୟରେ କେବଳ ବିକାନୀର-ରାଜଭ୍ରାତା ପୃଥ୍ୱୀରାଜଙ୍କ ମୁଖରେ ବିଷାଦର ଛାୟା ପ୍ରତିଫଳିତ ହୋଇଥିଲା । ସେ ଅକବରଙ୍କଦ୍ୱାରା ବନ୍ଦୀ ହେଲେ ସୁଦ୍ଧା ଅନ୍ୟାନ୍ୟ ରାଜପୁତମାନଙ୍କ ପରି ନୀଚପ୍ରକୃତିକ ନ ଥିଲେ । ରାଣା ପ୍ରତାପସିଂହଙ୍କ ଅଲୌକିକ ଶୌର୍ଯ୍ୟ ଓ ବୀର୍ଯ୍ୟରେ ମୁଗ୍ଧ ହୋଇ ସେ ତାଙ୍କୁ ଦେବତାଜ୍ଞାନରେ ପୂଜା କରୁଥିଲେ । ଆଜି ପ୍ରତାପଙ୍କର ପୃଥ୍ୱୀରାଜଙ୍କ ମୁଖ ମଳିନ ହୋଇଅଛି । ଦରବାରର କାର୍ଯ୍ୟକଳାପ ତାଙ୍କୁ ଆଦୌ ଭଲ ଲାଗୁନାହିଁ । ମାନସିଂହପ୍ରଭୃତି ରାଜପୁତମାନେ ହୃଷ୍ଟ ହୋଇ ପ୍ରତାପଙ୍କ ପରାଜୟରେ ଆନନ୍ଦାନୁଭବ କରୁଅଛନ୍ତି—ଆଉ ପୃଥ୍ୱୀରାଜ ଜୀବିତ ଥାଇ ଏ ବିକଟ ଦୃଶ୍ୟ ଦେଖୁଅଛନ୍ତି !!

କ୍ରମେ ସନ୍ଧିର ଆଲୋଚନାବିଷୟ ତାହାଙ୍କର ଅସହ୍ୟ ହେବାକୁ ଲାଗିଲା । ସେ ଆଉ ସ୍ଥିର ହୋଇ ବସିପାରିଲେନାହିଁ—ସମ୍ରାଟଙ୍କୁ ଲକ୍ଷ୍ୟ କରି କହିଲେ, "ଜାହାଁପନା, ସନ୍ଧିପତ୍ର ପାଠକରିବା ନିମନ୍ତେ ଦାସଙ୍କୁ ଅନୁମତି ଦେଲେ କୃତାର୍ଥ ହୁଅନ୍ତି ।" ସମ୍ରାଟଙ୍କ ଆଦେଶାନୁସାରେ ସନ୍ଧିପତ୍ର ପାଠ କରି ପୃଥ୍ୱୀରାଜ ପୁନର୍ବାର କହିଲେ, "ଜାହାଁପନା, ଚନ୍ଦ୍ରର ପ୍ରଖରତା ଏବଂ ସୂର୍ଯ୍ୟର ଶୀତଳତା ବିଶ୍ୱାସଯୋଗ୍ୟ; କିନ୍ତୁ ରାଣା ପ୍ରତାପସିଂହଙ୍କ ସନ୍ଧିପ୍ରାର୍ଥନା ବିଶ୍ୱାସଯୋଗ୍ୟ ନୁହେ । ହୁଏତ କେହି ଜାଲ୍‌କରି ପ୍ରତାପଙ୍କ ନାମରେ ସନ୍ଧିଭିକ୍ଷା କରିଅଛି— ନଚେତ୍ ପ୍ରତାପସିଂହ କାହିଁକି ଏପରି ଗର୍ହିତ କାର୍ଯ୍ୟ କରନ୍ତେ ? ଅନୁମତି ଦେଲେ ଦାସ ପତ୍ର ଲେଖି ପ୍ରତାପଙ୍କଠାରୁ ପ୍ରକୃତ ତଥ୍ୟ ବୁଝନ୍ତା ।" ସମ୍ରାଟ୍ ତାହାଙ୍କର ଏହି ଅଭିଲାଷ ପୂର୍ଣ୍ଣ କଲେ । ପୃଥ୍ୱୀରାଜ ଓଜସ୍ୱିନୀ ଭାଷାରେ ପ୍ରତାପଙ୍କ ନିକଟକୁ ନିମ୍ନଲିଖିତ ମର୍ମରେ ଗୋଟିଏ ପତ୍ର ଲେଖିଲେ—

"ମହାରାଣା, ଆଜ ଏ କି ଶୁଣୁଅଛୁ ? ମେବାଡ଼ର ରାଣା ବିପଦରେ କାତର ହୋଇ ଶତ୍ରୁର ଶରଣାପନ୍ନ ହୋଇଅଛନ୍ତି—ସ୍ୱୟଂ କେଶରୀ ହସ୍ତିର ଦନ୍ତକୁ ଭୟକରି ଭୂମିଶାୟୀ ହୋଇଅଛି ! ଏହା ଯେ ବିଶ୍ୱାସଯୋଗ୍ୟ ନୁହେ । ଆଜି ସମଗ୍ର ଆର୍ଯ୍ୟାବର୍ତ୍ତ ଯବନର ପଦାନତ ହୋଇଅଛି । ଏହି ବିଶାଳ ସମତଳ-କ୍ଷେତ୍ରରେ କେବଳ ପ୍ରତାପରୂପୀ ଉଚ୍ଚ ଭୂଧରର ଶିର ଅବନମିତ ହୋଇନାହିଁ । ଆମ୍ଭେମାନେ ସମସ୍ତେ ରାଜପୁତ-କୁଳାଙ୍ଗାର —ଆମ୍ଭମାନଙ୍କର ଭାଗ୍ୟରବି ଅସ୍ତମିତ ହୋଇଅଛି । କେବଳ ପ୍ରତାପରୂପୀ ରବିର ବିମଳ କିରଣ ଆମ୍ଭମାନଙ୍କୁ ଆଲୋକପ୍ରଦାନ କରୁଥିଲା । ପ୍ରତାପଙ୍କ ବୀରତ୍ୱ-କାହାଣୀ ଶ୍ରବଣ କରି ଆମ୍ଭମାନଙ୍କର ପରାଧୀନ ଜୀବନ ଆନନ୍ଦରେ ପୂର୍ଣ୍ଣ ହେଉଥିଲା । ଆଜ ସେହି ପ୍ରତାପ ସ୍ୱାଧୀନତା ବିକ୍ରୟ କରିବାନିମନ୍ତେ ଶତ୍ରୁର ଦ୍ୱାରସ୍ଥ ହୋଇଅଛନ୍ତି । ଏହା ଯେ ବିଶ୍ୱାସଯୋଗ୍ୟ ନୁହେ । ଜଗତ ଜାଣେ, ପ୍ରତାପସିଂହ ଶତ୍ରୁର ଅଜେୟ—ପ୍ରତାପଙ୍କ ଜୀବିତ

ଶତ୍ରୁଙ୍କୁ ବନ୍ଦୀ କରିବାକୁ ଶତ୍ରୁର ଶକ୍ତି ନାହିଁ । ତେବେ ଏପରି ହେଲା କାହିଁକି—ମେବାଡ଼ପକ୍ଷରୁ ସନ୍ଧି-ପ୍ରସ୍ତାବ ଆଗତ ହେଲା କାହିଁକି ? ଏ ଦୁଃସମ୍ବାଦ ଶ୍ରବଣ କରି ଅଜି ସମଗ୍ର ଜଗତ୍ ସ୍ତବ୍ଧ ହୋଇଅଛି , ସ୍ୱାଧୀନତାର ପବିତ୍ର ନାମରେ କଳଙ୍କାରୋପ ହୋଇଅଛି । ମହାରାଣା ଯଦି କ୍ଷଣିକ ଦୁର୍ବଳତାବଶତଃ ଏ ଗର୍ହିତ କାର୍ଯ୍ୟ କରିବାକୁ ମନ ବଳାଇଥାନ୍ତି, ତାହାହେଲେ ଶୀଘ୍ର ତାହା ପରିହାର କରନ୍ତୁ—ସ୍ୱାଧୀନତାର ମଧୁର ଆହ୍ୱାନରେ ସୁପ୍ତ ପ୍ରାଣକୁ ଜାଗ୍ରତ କରନ୍ତୁ । ଜଗତ୍ ଜାଣୁ ଯେ, ହିନ୍ଦୁମାନଙ୍କ ସ୍ୱାଧୀନତା-ଲାଭ-ପ୍ରୟାସ ଅଦ୍ୟାପି ଲୋପ ପାଇନାହିଁ । ଇତି ।"

ପୃଥ୍ୱୀରାଜଙ୍କ ପତ୍ର ପାଠକରି ଗୁଣଗ୍ରାହୀ ଅକବର ଏକାନ୍ତ ମୁଗ୍ଧ ହୋଇଗଲେ । ପ୍ରତାପଙ୍କୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ଉକ୍ତ ପତ୍ର ଲିଖିତ ହୋଇଥିଲେ ହେଁ ସେ ପୃଥ୍ୱୀରାଜଙ୍କ ଉପରେ କୁପିତ କିମ୍ବା ବିରକ୍ତ ହେଲେନାହିଁ—ବରଂ ଅସାମାନ୍ୟ ଉଦାରତାସହକାରେ ତାହା ପ୍ରତାପଙ୍କ ନିକଟକୁ ପ୍ରେରଣ କଲେ । ପତ୍ର ପ୍ରାପ୍ତି ସମୟରେ ରାଣା ସର୍ଦ୍ଦାରମାନଙ୍କ ସହିତ ଅରଣ୍ୟରେ ବସି ନିଜ ଭବିଷ୍ୟତ ବିଷୟ ଆଲୋଚନା କରୁଥିଲେ । ପୃଥ୍ୱୀରାଜଙ୍କ ତେଜୋମୟୀ ବାଣୀ ପାଠକରି ତାଙ୍କ ହୃଦୟ ଅପୂର୍ବ ଉତ୍ସାହରେ ମାତି ଉଠିଲା । ତାଙ୍କ ନୟନସମକ୍ଷରୁ ଦୁର୍ବଳତାର ମୋହ ଅପସାରିତ ହେଲା—ହୃଦୟରୁ ଅବସାଦ ଦୈନ୍ୟ ଦୂରୀଭୂତ ହେଲା, ତାଙ୍କ ରଣଶ୍ରାନ୍ତ ଶରୀରରେ ପୂର୍ବ ପ୍ରତାପ ଓ ତେଜର ପୁନଃସଞ୍ଚାର ହେଲା । ନିଜ ଅବିମୃଶ୍ୟକାରିତା ନିମନ୍ତେ ଦୁଃଖ ପ୍ରକାଶ କରି ସେ ପୁନର୍ବାର ଅକବରଙ୍କ ନିକଟକୁ ପତ୍ର ପ୍ରେରଣକଲେ । ଦିଲ୍ଲୀ ଏବଂ ମେବାଡ଼ ମଧ୍ୟରେ ପୁନର୍ବାର ଧୂମରାଗ୍ନି ପ୍ରଜ୍ୱଳିତ ହେଲା ।

## ଖୁସ୍‌ରୋଜ୍ ମେଳା



ଆକବରଙ୍କ ବିରୁଦ୍ଧରେ ଯେଉଁ ସବୁ ଅଭିଯୋଗ ଶୁଣାଯାଏ, ସେଥି ମଧ୍ୟରେ ଖୁସ୍-ରୋଜ-ମେଳାର ନାମ ଉଲ୍ଲେଖଯୋଗ୍ୟ । ଖୁସ୍‌ରୋଜ୍ ଶବ୍ଦର ଅର୍ଥ ଆନନ୍ଦ-ବାସର । ଦିଲ୍ଲୀର ମହାନୁପ୍ରାଥିକ ସମ୍ରାଟ୍ ଆକବର ସ୍ଵୀୟ ପାପପ୍ରବୃତ୍ତିର ଚରିତାର୍ଥତାନିମିତ୍ତ ପ୍ରତିବର୍ଷ ଖୁସ୍‌ରୋଜ୍‌ନାମକ ଗୋଟିଏ ମେଳାର ଅନୁଷ୍ଠାନ କରୁଥିଲେ । ଏହି ମେଳାରେ ପୁରୁଷମାନଙ୍କର ପ୍ରବେଶାଧିକାର ନଥିଲା । ରାଜପୁତ-ଲଲନା ଓ ମୁସଲମାନ-ରମଣୀଗଣ ସେହି ମେଳାରେ ଉପସ୍ଥିତ ହୋଇ ନାନାବିଧ ଶିଳ୍ପଜାତ ଦ୍ରବ୍ୟାଦି ବିକ୍ରୟ କରୁଥିଲେ । ରାଜପରିବାରଭୁକ୍ତ ରମଣୀଗଣ ଉକ୍ତ ପଣ୍ୟଦ୍ରବ୍ୟସମୂହର କ୍ରେତ୍ରୀ ଥିଲେ । ସମ୍ରାଟ୍ ଆକବର ଛଦ୍ମବେଶରେ ଏହି ମେଳାରେ ଉପସ୍ଥିତ ହୋଇ ପଣ୍ୟଦ୍ରବ୍ୟର ପ୍ରକୃତ ମୂଲ୍ୟ ଅବଗତ ହେଉଥିଲେ ।

ଏହି ଉତ୍ସବମୂଳରେ ଆକବରଙ୍କର ଗୋଟିଏ ଗୂଢ଼ ଦୁରଭିସନ୍ଧି ବିଦ୍ୟମାନ ଥିଲା । ମୁସଲମାନ ଐତିହାସିକ ଆବୁଲ୍-ଫଜଲ୍ ଏହି ଦୁରଭିସନ୍ଧିକୁ ଗୋପନରେ ରଖିବାନିମନ୍ତେ ନାନାବିଧ କୌଶଳ ଅବଲମ୍ବନ କଲେ ସୁଦ୍ଧା କୃତକାର୍ଯ୍ୟ ହୋଇପାରିନାହାନ୍ତି, ଯେହେତୁ ଭାଟକବିମାନଙ୍କ କାବ୍ୟ-ଗ୍ରନ୍ଥରେ ଆକବରଙ୍କ ସମସ୍ତ ଗୁପ୍ତଲୀଳା ପ୍ରକାଶ ପାଇଅଛି । ଏହି

ଉତ୍ସବରେ ଅସଂଖ୍ୟ ରାଜପୁତଲଲନାଙ୍କ ଅମୂଲ୍ୟ ସତୀତ୍ୱ-ରତ୍ନ ସମ୍ରାଟଙ୍କ-ଦ୍ୱାରା ଅପହୃତ ହୋଇଅଛି, ଅସଂଖ୍ୟ ରାଜପୁତ-ପରିବାରର ମାନସମ୍ଭ୍ରମ କଳଙ୍କ ସ୍ରୋତରେ ଭାସିଯାଇଅଛି । ଏହି ଆନନ୍ଦ-ବଜାରରେ ବିକାନୀର ରାଜ ରାୟସିଂହଙ୍କ ପତ୍ନୀ ସାମାନ୍ୟ ରତ୍ନ-ଭୂଷଣ-ବିନିମୟରେ ଆକବରଙ୍କ ହସ୍ତରେ ଅମୂଲ୍ୟ ସତୀତ୍ୱ-ରତ୍ନ ଅର୍ପଣ କରିଥିଲେ । କାପୁରୁଷ ରାୟସିଂହ ଏଥିର ପ୍ରତିକାର କରିବା ଦୂରେ ଥାଉ, ବରଂ ତାହା ଘୋଡ଼ାଇବାକୁ ଚେଷ୍ଟା କରିଥିଲେ । ଏହିପରି ଆଉ ଯେଉଁ ରାଜପୁତ-ରମଣୀମାନଙ୍କ ସତୀତ୍ୱ-ରତ୍ନ ନଷ୍ଟ ହୋଇଥିଲା, ସେମାନଙ୍କ ପତିମାନେ ମଧ୍ୟ ପ୍ରତିକାର-ପ୍ରୟାସୀ ହୋଇ ନ ଥିଲେ । ସେଥିପାଇଁ ଆକବରଙ୍କ ଜଘନ୍ୟ କାଣ୍ଡଗୁଡ଼ିକ ଜନ-ସମାଜରେ ସମ୍ୟକ୍‌ରୂପେ ପ୍ରକାଶ ପାଇନଥିଲା ।

ବିକାନୀର-ରାଜଭ୍ରାତା ପୃଥ୍ୱୀରାଜ ମହାବୀର ଶକ୍ତିସିଂହଙ୍କ କନ୍ୟାର ପାଣିଗ୍ରହଣ କରିଥିଲେ । ମେବାଡ଼-ରାଜବଂଶର ମହନୀୟ ଗୁଣରାଜିରେ ରାଜକୁମାରୀ ବିଭୂଷିତ ଥିଲେ । ତାହାଙ୍କର ସୌନ୍ଦର୍ଯ୍ୟ ଅନନ୍ୟସାଧାରଣ ଥିଲା । ବହୁ ପୁଣ୍ୟଫଳରେ ପୃଥ୍ୱୀରାଜ ଲଲନା-ଲଲାମଭୂତା ରମଣୀରତ୍ନଙ୍କୁ ଲାଭକରିଥିଲେ । ସହଧର୍ମିଣୀଙ୍କ ପବିତ୍ର ପ୍ରେମାଳାପରେ ପୃଥ୍ୱୀରାଜ ବନ୍ଦୀ-ଅବସ୍ଥାରେ ସୁଦ୍ଧା ସୁଖରେ କାଳଯାପନ କରୁଥିଲେ ।

ଥରେ ଆକବର ଆନନ୍ଦ-ବାସରର ଆନନ୍ଦ-ବଜାରରେ ବିଚରଣ କରିବା ସମୟରେ ଏହି ରୂପବତୀ-କୁଳ-କମଳାଙ୍କ ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ତାହାଙ୍କର ନେତ୍ର-ମୁକୁରରେ ପ୍ରତିଫଳିତ ହେଲା । ସମ୍ରାଟ୍ ଏପରି ଉଜ୍ଜ୍ୱଳ ସୌନ୍ଦର୍ଯ୍ୟ ଏଥି ପୂର୍ବେ କେବେ ଦେଖିନଥିଲେ । ତାହାଙ୍କର ମାନସ-ଷଟ୍‌ପଦ ପୃଥ୍ୱୀରାଜ-ପତ୍ନୀଙ୍କ ଆନନ-କମଳର ପବିତ୍ର ସୁଧା ପାନକରିବାକୁ ବ୍ୟାକୁଳ ହେଲା । ସେ ଆଉ ନିଜକୁ ସମ୍ଭାଳି ରଖିପାରିଲେନାହିଁ—ସୁନ୍ଦରୀଙ୍କୁ ଲାଭ କରିବା ନିମନ୍ତେ ବିବିଧ କୌଶଳ ଉଦ୍ଭାବନ କରିବାକୁ ଲାଗିଲେ ।

ସରଳା ରାଜକୁମାରୀ ଅକବରଙ୍କ ମନକଥା ଜାଣିବେ କାହୁଁ ? ନାରୀ-ମେଳାରେ ଯେ ପୁରୁଷ ପ୍ରବେଶ କରିପାରେ, ସେ ଏହା ଘୃଣାକ୍ଷରେ ସୁଦ୍ଧା ଜାଣିନଥିଲେ । ସେ ସର୍ବଦା ଯେଉଁ ମାର୍ଗରେ ନିଃଶଙ୍କଚିତ୍ତରେ ଯାତାୟାତ କରୁଥିଲେ, ଆଜି ସୁଦ୍ଧା ସେହି ମାର୍ଗରେ ଆସି ଦେଖନ୍ତି ଯେ, ଗୃହଅଭ୍ର ଦ୍ୱାର ବନ୍ଦ । ଏହି ଅସମ୍ଭାବିତ ଘଟଣା ଦେଖି ତାଙ୍କ ହୃଦୟ ଭୟ ଓ ବିସ୍ମୟରେ ପୂର୍ଣ୍ଣ ହୋଇଗଲା । ସେ କଣ କରିବେ ଯେ କିଛି ଠିକ୍ କରିପାରିଲେନାହିଁ ।

ସହସା ଗୋଟିଏ ଦ୍ୱାରର ଉନ୍ମୋଚନ-ଶବ୍ଦ ତାହାଙ୍କର ଶ୍ରୁତି-ପଥାରୂଢ଼ ହେଲା । ସତୀଶିରୋମଣି ଆଶଙ୍କିତ ନୟନରେ ଦ୍ୱାରଆଡ଼େ ଦୃଷ୍ଟି-ନିକ୍ଷେପ କରି ଦେଖିଲେ ଯେ, ମଦନୋନ୍ମତ୍ତ ସମ୍ରାଟ୍ ଅକବର ବାହୁ-ପ୍ରସାରଣପୂର୍ବକ ଦ୍ୱାର-ଦେଶରେ ଦଣ୍ଡାୟମାନ । ସମ୍ରାଟଙ୍କ ଅନୁଚିତ ଅନୁରୋଧରେ କୋପାବିଷ୍ଟ ହୋଇ ବୀରାଙ୍ଗନା ତତ୍କ୍ଷଣାତ୍ ସ୍ୱୀୟ କଟି-ଦେଶରୁ ଛୁରିକା ବାହାର କରି ଅକବରଙ୍କ ବକ୍ଷୋପରି ସ୍ଥାପନ କଲେ ଏବଂ କଠୋର ସ୍ୱରରେ ଭର୍ତ୍ସନା କରି କହିଲେ, "ପାପିଷ୍ଠ, ଦ୍ୱାର ଛାଡ଼; ନଚେତ୍ ଏହି ଛୁରିକାରେ ତୋର ପ୍ରାଣ ନେବି ।"

ସତୀକୁଳେଶ୍ୱରୀଙ୍କ ଅଲୌକିକ ସାହସ ଓ ବୀରତ୍ୱ ସନ୍ଦର୍ଶନ କରି ଅକବରଙ୍କ ହୃଦୟ ସ୍ତମ୍ଭିତ ହୋଇଗଲା—ପାପପ୍ରବୃତ୍ତି କ୍ଷଣମୁହୂର୍ତ୍ତରେ ତାଙ୍କ ହୃଦୟରେ ବିଲୀନ ହୋଇଗଲା, ସତୀଙ୍କ ଆଦେଶ ପାଳନ ନକରି ସେ ଆଉ ରହିପାରିଲେନାହିଁ । ସତୀଶିରୋମଣି ନିରାପଦଭାବରେ ସ୍ୱଗୃହକୁ ପ୍ରତ୍ୟାବୃତ୍ତ ହେଲେ ।

ଜଳରେ ତୈଳବିନ୍ଦୁବତ୍ ଏହି ଘଟଣା କ୍ରମେ ସର୍ବତ୍ର ପ୍ରଚାରିତ ହେଲା । ଅକବରଙ୍କ ଦୁରାଚରଣ-ସମ୍ବାଦ ଶ୍ରବଣକରି ରାଜପୁତ-ବୀରମାନେ କ୍ରୋଧରେ ପ୍ରଜ୍ୱଳିତ ହୋଇଗଲେ । ମାନସିଂହଙ୍କ ଜ୍ଞାନ-ଚକ୍ଷୁ ଉନ୍ମୀଳିତ

ହେଲା । ଅକବରଙ୍କୁ ଏତାବତ୍‌କାଳ ସାହାଯ୍ୟ କରି ସେ ଯେ କି ଦୁଷ୍କାର୍ଯ୍ୟ ଭୁଲ କରିଛନ୍ତି, ଏବେ ତାହା ଭଲରୂପେ ବୁଝିପାରିଲେ । ପୃଥ୍ୱୀରାଜ ମୁହୂର୍ତ୍ତକାଳ ବିଳମ୍ବ ନ କରି ଦକ୍ଷୀ-ନଗରୀକୁ ପଳାୟନ କଲେ । ଭୀଷଣ ଅନ୍ତର୍ବିପ୍ଳବର ପ୍ରବଳ ଭୂମିକମ୍ପରେ ଅକବରଙ୍କ ସାମ୍ରାଜ୍ୟର ମୂଳଦଣ୍ଡ ପର୍ଯ୍ୟନ୍ତ ପ୍ରକମ୍ପିତ ହେବାକୁ ଲାଗିଲା ।



## ଅଷ୍ଟାଦଶ ପରିଚ୍ଛେଦ



# ରାଜ୍ୟୋଦ୍ଧାର



ଆମ୍ଭେମାନେ ଆଗରୁ କହିଅଛୁ ଯେ, ପୃଥ୍ୱୀରାଜଙ୍କ ପତ୍ର ପାଠ କରି ପ୍ରତାପସିଂହଙ୍କ ହୃଦୟ ପୁନରୁତ୍ତେଜିତ ହୋଇଥିଲା । ମୋଗଲ ବିରୁଦ୍ଧରେ ସଂଗ୍ରାମ କରିବାନିମନ୍ତେ ସେ ପୁନର୍ବାର ବିପୁଳ ଆୟୋଜନ କରିବାକୁ ଲାଗିଲେ । ରାଜପୁତ ଏବଂ ମୋଗଲ-ବାହିନୀ ପୁନର୍ବାର ପରସ୍ପର ସମ୍ମୁଖୀନ ହେଲେ । ପ୍ରତାପସିଂହ କେତେକ ଯୁଦ୍ଧରେ ଜୟଲାଭ କଲେ ସତ୍ୟ; କିନ୍ତୁ ତଥାପି ତାହାଙ୍କର ଅଭୀଷ୍ଟସିଦ୍ଧି ହୋଇପାରିଲା ନାହିଁ । ମୋଗଲମାନଙ୍କଦ୍ୱାରା ବିତାଡ଼ିତ ହୋଇ ସେ ପୁନର୍ବାର ଗିରିକନ୍ଦରର ଆଶ୍ରୟ ଗ୍ରହଣ କଲେ ।

କ୍ରମେ ପ୍ରତାପସିଂହଙ୍କ ସହାୟ-ସମ୍ବଳ କ୍ଷୀଣ ହେବାକୁ ଲାଗିଲା । ହୃଦୟର ରକ୍ତପାତ କରି ମଧ୍ୟ ସେ ମାତୃଭୂମିର ପୁନରୁଦ୍ଧାର କରିପାରିଲେ-ନାହିଁ । ତାହାଙ୍କର ଜନବଳ ଓ ଧନବଳ ଏକାବେଳକେ ନିଃଶେଷ ହୋଇପଡ଼ିଲା । ଅରଣ୍ୟର ଫଳମୂଳ ମଧ୍ୟ ଖାଇବାକୁ ମିଳିଲାନାହିଁ ।

ପ୍ରତାପସିଂହଙ୍କ ଦୁର୍ଦ୍ଦଶା ଅଧୁନା ବର୍ଣ୍ଣନାତୀତ । ତଥାପି ତାଙ୍କମନରେ ନିଜ ନିମନ୍ତେ ଅଣୁମାତ୍ର ଚିନ୍ତା ନାହିଁ; କିନ୍ତୁ ଯେଉଁ ସ୍ୱଦେଶ ନିମନ୍ତେ ସେ କଷ୍ଟ ସ୍ୱୀକାର କରୁଅଛନ୍ତି, ସେହି ସ୍ୱଦେଶର ଅବସ୍ଥା

ନିର୍ବଂଶ ସୋଭନୀୟ ରହିଲା । ଖାଦ୍ୟାଭାବରେ ଅଶ୍ୱାରୋହୀ ପ୍ରମାଦ ଗଣିବାକୁ ଲାଗିଲେ । ଏ ସବୁ ଦେଖି ପ୍ରତାପ ଆଉ ଧୈର୍ଯ୍ୟଧରି ରହିପାରିଲେ-ନାହିଁ । ଶ୍ରମପରାକ୍ରମ ମୋଗଲ-ବାହିନୀ ବିରୁଦ୍ଧରେ ବର୍ତ୍ତମାନ ଛିଡ଼ା ହେବା ଅସମ୍ଭବ ମନେ କରି ସେ ମେବାଡ଼-ତ୍ୟାଗରେ ଅଭିଲାଷୀ ହେଲେ ।

ସେ ସମୟରେ ସିନ୍ଧୁ-ନଦତଟରେ ସଗଦ ନାମକ ଗୋଟିଏ କ୍ଷୁଦ୍ର ରାଜ୍ୟ ଥିଲା । ପ୍ରତାପସିଂହ ଏହି ରାଜ୍ୟକୁ ପଳାୟନ କରିବାକୁ ସ୍ଥିର କରି କତିପୟ ବିଶ୍ୱସ୍ତ ସର୍ଦ୍ଦାର ଓ ପୁତ୍ରକନ୍ୟାଗଣଙ୍କ ସମଭିବ୍ୟାହାରରେ ଅଗ୍ରବଲୀ ପର୍ବତର ଶିଖର-ଦେଶରେ ସମୁପସ୍ଥିତ ହେଲେ । ତାଙ୍କ ନୟନ-ପ୍ରାନ୍ତରୁ ଶୋକାଶ୍ରୁଧାରା ନିର୍ଗତ ହେବାକୁ ଲାଗିଲା । ପ୍ରତାପସିଂହ ମେବାଡ଼ ନିମନ୍ତେ ଏତେ ତ୍ୟାଗ ସ୍ୱୀକାର କରିଅଛନ୍ତି, ତଥାପି ମେବାଡ଼ର ଦୁର୍ଦ୍ଦଶା ଘୁଞ୍ଚାଇପାରିନାହାନ୍ତି । ଶେଷରେ ପ୍ରିୟତମ ଜନ୍ମଭୂମିକୁ ଛାଡ଼ି ପଳାଇବାକୁ ବାଧ୍ୟ ହୋଇଅଛନ୍ତି । ଯେଉଁ ମେବାଡ଼ର ଶାନ୍ତିପ୍ରଦ ଅଙ୍କରେ ତାଙ୍କ ଶରୀର ଲାଳିତ ପାଳିତ, ଯେଉଁ ମେବାଡ଼ର ପ୍ରତ୍ୟେକ ଧୂଳିକଣା ସହିତ ତାଙ୍କ ଜୀବନର ସ୍ମୃତି ବିଜଡ଼ିତ, ସେହି ପ୍ରିୟତମ ଜନ୍ମଭୂମିକୁ ଆଜି ଛାଡ଼ି ଯିବାକୁ ହେବ ଭାବି ତାଙ୍କ ହୃଦୟ ବାଷ୍ପାକୁଳ ହେବାକୁ ଲାଗିଲା । ତାଙ୍କ ଜୀବନର ସର୍ବଶ୍ରେଷ୍ଠ କାର୍ଯ୍ୟ ଅପୂର୍ଣ୍ଣ ହୋଇ ରହିଲା । ପରିଶେଷରେ ସେ ମେବାଡ଼ ଦର୍ଶନ-ସୁଖରୁ ସୁଦ୍ଧା ବଞ୍ଚିତ ହେଲେ । ପ୍ରତାପସିଂହ ଜନ୍ମଭୂମି ନିକଟରୁ ବିଦାୟ ନେବା-ପୂର୍ବରୁ ଥରେ ପ୍ରାଣ ଭରି ଚିତୋଡ଼ ଦୁର୍ଗର କମନୀୟ କାନ୍ତି ଆଡ଼େ ଶେଷ ଦୃଷ୍ଟିପାତ କଲେ । ବିଷାଦ-ଛାୟାରେ ତାଙ୍କ ମୁଖଚନ୍ଦ୍ର ମଳିନ ହୋଇଗଲା । ପ୍ରତାପସିଂହ ଦୁଃଖଭାରାକ୍ରାନ୍ତ ହୃଦୟରେ ଗିରିଶିଖରରୁ ଅବତରଣ କଲେ ।

ଭାଗ୍ୟ-ଲକ୍ଷ୍ମୀ ଅନ୍ତରାଳରେ ଥାଇ ପ୍ରତାପସିଂହଙ୍କ କଷ୍ଟଭାର ଦେଖୁଥିଲେ । ଅତି ରାଣାଙ୍କ ଦୁର୍ଦ୍ଦଶା ଦେଖି ସେ ଆଉ ସହିପାରିଲେ ନାହିଁ ।

ପ୍ରତାପସିଂହଙ୍କ ପ୍ରତି ତାଙ୍କ ସ୍ନେହ ଓ କରୁଣାର ସଞ୍ଚାର ହେଲା । ତାଙ୍କ ଅନୁଗ୍ରହକ୍ରମେ ରାଣା ଅପ୍ରତ୍ୟାଶିତଭାବରେ ପୁନର୍ବାର ସୌଭାଗ୍ୟର ସନ୍ମୁଖୀନ ହେଲେ । ମେବାଡ଼ର ବୃଦ୍ଧ ମନ୍ତ୍ରୀ ଭାମସା ଏହି ସମୟରେ ଉପସ୍ଥିତ ହୋଇ ସ୍ୱୀୟ ଅତୁଳ ଧନରାଶି ପ୍ରଭୁଙ୍କ ଚରଣରେ ଉତ୍ସର୍ଗ କଲେ । ଏହି ଧନଦ୍ୱାରା ଏକାଦିକ୍ରମେ ଦ୍ୱାଦଶ ବର୍ଷପର୍ଯ୍ୟନ୍ତ ପଞ୍ଚବିଂଶତି ସହସ୍ର ସୈନ୍ୟର ଭରଣପୋଷଣ ହେବାର ସମ୍ଭାବନା ଥିଲେ ହେଁ ରାଣା ପ୍ରତାପସିଂହ ତାହା ଗ୍ରହଣ କରିବାକୁ ଇଚ୍ଛୁକ ହେଲେନାହିଁ । ସେ ରାଜା ହୋଇ ଦତ୍ତ ପଦାର୍ଥର ପୁନଃପରିଗ୍ରହ କରିବେ କିପରି ? କିନ୍ତୁ ଭାମସା ଏଥିରେ ନିରସ୍ତ ନ ହୋଇ କହିଲେ, "ମହାରାଣା, ମାତୃଭୂମିର ସେବାରେ ରାଜାପ୍ରଜା ସମସ୍ତଙ୍କର ସମାନ ଅଧିକାର ଅଛି । ଆପଣ ମେବାଡ଼ର ରାଣାରୂପେ ଏହି ଧନ ନେଇନ ପାରନ୍ତି, କିନ୍ତୁ ସ୍ୱାଧୀନତା-ଯୁଦ୍ଧରେ ସେନାପତିରୂପେ ନେବାକୁ ବାଧ୍ୟ ।" ଭାମସାଙ୍କ ଯୁକ୍ତି ଶୁଣି ପ୍ରତାପସିଂହ ଏହି ଅଯାଚିତ ଦାନକୁ ଆଉ ପ୍ରତ୍ୟାଖ୍ୟାନ କରିପାରିଲେନାହିଁ, ସ୍ୱଦେଶର କାର୍ଯ୍ୟନିମନ୍ତେ ମନ୍ତ୍ରିବରଙ୍କ ପ୍ରଦତ୍ତ ଧନ ନେବାକୁ ବାଧ୍ୟହେଲେ ।

ରାଣା ପ୍ରତାପସିଂହଙ୍କ ନିରାଶ ହୃଦୟରେ ଅଚିରେ ନୂତନ ଆଶାର ସଞ୍ଚାର ହେଲା, ଅକୂଳ ବିପଦ୍-ସାଗରରେ ଅବତରଣ-ଭୂମି ତାହାଙ୍କର ଦୃଷ୍ଟିପଥାରୂଢ଼ ହେଲା । ନୂତନ-ସାହାଯ୍ୟ-ପ୍ରାପ୍ତ ହୋଇ ସେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ଦ୍ୱିଗୁଣିତ ଉତ୍ସାହସହକାରେ ନୂତନ-ସେନା-ସଂଗ୍ରହରେ ମନୋନିବେଶ କଲେ । ଏହି ସମୟରେ ବିକାନିର-ରାଜଭ୍ରାତା ପୃଥ୍ୱୀରାଜ ତାଙ୍କ ସହିତ ମିଳିତ ହୋଇ ସେନାସଂଗ୍ରହ-କାର୍ଯ୍ୟରେ ତାଙ୍କୁ ବିଶେଷ ସାହାଯ୍ୟ କରିଥିଲେ । ପୃଥ୍ୱୀରାଜ ଗ୍ରାମେ ଗ୍ରାମେ ବୁଲି ସ୍ୱଦେଶ-ମାତୃକାର ସେବା-ମନ୍ତ୍ରରେ ଲୋକଙ୍କୁ ଦୀକ୍ଷିତ କରିବାକୁ ଲାଗିଲେ । ତାହାଙ୍କର ଉତ୍ତେଜନାମୟୀ ସମର-ଗୀତିକାରେ ଦେଶର ଏକ ପ୍ରାନ୍ତରୁ ଅପର

ପ୍ରାନ୍ତପର୍ଯ୍ୟନ୍ତ ଉତ୍ସାହର ସ୍ରୋତ ପ୍ରବାହିତ ହେବାକୁ ଲାଗିଲା । ବୀରପୁଙ୍ଗବ ପ୍ରତାପସିଂହଙ୍କ ନାମ ଶ୍ରବଣ କରି କୃଷାଣଗଣ ହଳପରିତ୍ୟାଗପୂର୍ବକ କୃପାଣହସ୍ତରେ ରାଣାଙ୍କ ଛତ୍ରତଳେ ସମବେତ ହେଲେ । ଅତିଅଳ୍ପ ସମୟମଧ୍ୟରେ ଗୋଟିଏ ବିଶାଳ ବାହିନୀ ଗଠିତ ହେଲା । ପ୍ରତାପସିଂହ ଭୀମ ଚର୍ଜନସହକାରେ ଶତ୍ରୁ-ଶିବିରାଭିମୁଖରେ ଅଗ୍ରସର ହେଲେ । ଦେୱୀର-ଗିରିପଥରେ ମୋଗଲ-ସେନାପତି ଶାବାଜ୍ ଖାଁ ଏବଂ ପ୍ରତାପସିଂହଙ୍କ ମଧ୍ୟରେ ଭୀଷଣ ସଂଗ୍ରାମ ଆରମ୍ଭ ହେଲା । ଶାବାଜ୍ ଖାଁ ଯୁଦ୍ଧରେ ପରାସ୍ତ ହୋଇ ରଣାଙ୍ଗନଶାୟୀ ହେଲେ । ଏହିପରି ବହୁ ଯୁଦ୍ଧରେ ଯବନମାନଙ୍କୁ ପରାସ୍ତ କରି ପ୍ରତାପସିଂହ ସ୍ୱୀୟ ଦୁର୍ଗଗୁଡ଼ିକ ପୁନରଧିକାର କଲେ ।

ଆକବର ଏସବୁ ଶୁଣି ସୁଦ୍ଧା ବେଶି କିଛି କରିବାକୁ ସମର୍ଥ ହୋଇ-ନ ଥିଲେ । ଗୃହବିବାଦର ଜଟିଳତାମଧ୍ୟରେ ତାହାଙ୍କର ବୁଦ୍ଧିବୃତ୍ତି ହଜି-ଯାଇଥିଲା । ସେ ଅନେକ ଚେଷ୍ଟା କରି ସୁଦ୍ଧା ବିଦ୍ରୋହୀ ସେନାନୀଙ୍କୁ ଶାସନାଧୀନ କରିପାରିଲେନାହିଁ । ଏଥିରେ ରାଜପୁତମାନେ ମଧ୍ୟ ତାଙ୍କୁ ଅଧିକ ପୂର୍ବପରି ସାହାଯ୍ୟ କଲେ ନାହିଁ । ଖୁସ୍‌ରୋଜ୍-ମେଳାର ବୀଭତ୍ସତା ସେମାନଙ୍କୁ ବିଦ୍ରୋହୀ କରିଥିଲା । ଆକବର ସେମାନଙ୍କ ସମକ୍ଷରେ ପ୍ରତିଜ୍ଞା କଲେ ଯେ, ସେ ଖେହ୍‌ରୁଜ୍ ଭୀଷଣ-ସମ୍ପ୍ରଦାୟରେ ବରତ କରିବେ । ଏଥିରେ ଅବଶ୍ୟ ଦିଲ୍ଲୀ ଦରବାରର ରାଜପୁତମାନେ ଆଶ୍ୱସ୍ତ ହୋଇଥିଲେ, କିନ୍ତୁ ପ୍ରତାପଙ୍କ ବିରୁଦ୍ଧରେ ଅଗ୍ରସର ହେବାକୁ କାହାର ପ୍ରବୃତ୍ତି ହେଲା-ନାହିଁ । ପ୍ରତାପ ଦୁର୍ଗପରେ ଦୁର୍ଗ ଜୟ କରି ମେବାଡ଼ରେ ସ୍ୱାଧୀନତାର ଶୁଭ୍ର ବୈଜୟନ୍ତୀ ଉଡ଼ାଇବାକୁ ଲାଗିଲେ ।



ଊନବିଂଶ ପରିଚ୍ଛେଦ

# ଯବନିକାପତନ

ଭାଗ୍ୟଲକ୍ଷ୍ମୀ ସୁପ୍ରସନ୍ନ ହେଲେ ପ୍ରତିକୂଳ ଅବସ୍ଥାରେ ସୁଦ୍ଧା ଜୟଶ୍ରୀ କରଗତ ହୋଇଥାଏ । ଅଳ୍ପଦିନ ପୂର୍ବେ ଯେଉଁ ପ୍ରତାପ ନିରାଶହୃଦୟରେ ସ୍ୱଦେଶ ଛାଡ଼ି ଚାଲିଯିବାକୁ ବାଧ୍ୟ ହୋଇଥିଲେ, ଆଜି ତାଙ୍କ ପ୍ରତାପରେ ଶତ୍ରୁଶିବିରରେ ମହା ଆତଙ୍କ ଉପସ୍ଥିତ ହୋଇଅଛି । ମୋଗଲମାନେ ପ୍ରତିପଦରେ ପଛଘୁଞ୍ଚା ଦେବାକୁ ବାଧ୍ୟ ହେଉଛନ୍ତି । ଏପରି ପରାଜୟ ଓ ଲାଞ୍ଛନା ସେମାନେ ଜୀବନରେ କେବେ ଭୋଗି ନ ଥିଲେ । ପ୍ରତାପ ଯେଉଁ ଆଡ଼େ ଯାଉଅଛନ୍ତି, ଜୟଶ୍ରୀକୁ ସଙ୍ଗରେ ନେଇ ଯାଉଅଛନ୍ତି । ଏଥିପୂର୍ବେ ସୁବିଧା-ଅଭାବରୁ ତାଙ୍କ ଉତ୍ସାହର ପୂର୍ଣ୍ଣ ବିକାଶ ସମ୍ଭବ ହୋଇନଥିଲା । ଆଜି ସେ ଅବରୁଦ୍ଧ ଉତ୍ସାହର ସମସ୍ତ ବାଧାବିଘ୍ନ ଦୂର ହୋଇଅଛି । ପ୍ରତାପସିଂହ ରଣାଙ୍ଗନରେ ପ୍ରମତ୍ତ କେଶରୀତୁଲ୍ୟ ବିଚରଣ କରୁଅଛନ୍ତି ।

ପ୍ରତାପସିଂହଙ୍କ ଅଲୌକିକ ପରାକ୍ରମ ଯୋଗେ କ୍ରମେ ମେବାଡ଼-ଲକ୍ଷ୍ମୀଙ୍କ ମଳିନ ମୁଖରେ ପୁନର୍ବାର ଆନନ୍ଦର ଦିବ୍ୟ ଜ୍ୟୋତି ପ୍ରସ୍ଫୁଟିତ ହେଲା । ମୋଗଲମାନେ ମେବାଡ଼ଭୂମି ପରିତ୍ୟାଗ କରି ସ୍ୱଦେଶାଭିମୁଖରେ ପଳାୟନ କଲେ । କିନ୍ତୁ ଏତେ କରି ସୁଦ୍ଧା ପ୍ରତାପଙ୍କ କାର୍ଯ୍ୟ ପୂର୍ଣ୍ଣ ହୋଇପାରିଲା-ନାହିଁ, ପ୍ରିୟତମ ଚିତୋଡ଼ଦୁର୍ଗ ମୋଗଲମାନଙ୍କ ଅଧୀନରେ ରହିଗଲା । ଚିତୋଡ଼ବ୍ୟତୀତ ମେବାଡ଼ର ଅନ୍ୟ ଦୁର୍ଗଗୁଡ଼ିକ ରାଣାଙ୍କର ହସ୍ତଗତ ହେଲା ।

କ୍ରମେ ଅତ୍ୟଧିକ ଚିନ୍ତା ଓ ପରିଶ୍ରମ ଯୋଗେ ରାଣାଙ୍କ ଶରୀର ଅବସନ୍ନ ହେବାକୁ ଲାଗିଲା, ପ୍ରବୀଣ ବୟସର ପ୍ରାରମ୍ଭରେ ହିଁ ଅକାଳବାର୍ଦ୍ଧକ୍ୟ ଆସି ଉପସ୍ଥିତ ହେଲା । ତାଙ୍କ ହୃଦୟରେ ଆଉ ପୂର୍ବର ସେ ଉତ୍ସାହ ନାହିଁ—ଅଛି କେବଳ ନିରାଶା; ଦୈନ୍ୟ ଓ ନିର୍ବେଦ ! ପ୍ରତାପ ଏତେ ଜୟ କରି ମଧ୍ୟ ଚିତୋର-ଅଭାବରେ ସୁଖୀ ହୋଇପାରିନାହାନ୍ତି । ସବୁବେଳେ ତାହାଙ୍କର ଏକମାତ୍ର ଚିନ୍ତା, ଚିତୋର କିପରି ଅଧିକୃତ ହେବ ? ରାଣାଙ୍କ ଶୌର୍ଯ୍ୟ ଓ ତେଜସ୍ୱିତାରେ ମୁଗ୍ଧ ହୋଇ ଆକବର ଚିତୋର ଦୁର୍ଗ ପ୍ରତ୍ୟର୍ପଣ କରିବାକୁ ଇଚ୍ଛୁକ ହୋଇଥିଲେ; କିନ୍ତୁ ପ୍ରତାପ ସେଥିରେ ସ୍ୱୀକୃତ ହେଲେନାହିଁ । ସେ ରାଜା ହୋଇ କିପରି ପରର ଦାନ ଗ୍ରହଣ କରିବେ ? ଯଦି ତାଙ୍କ ବାହୁରେ ବଳ ଥାଏ, ତାହାହେଲେ ସେ ଯୋଦ୍ଧୃବେଶରେ ଯାଇ ଚିତୋର ଜୟ କରିବେ—ଶତ୍ରୁର ଅନୁଗ୍ରହ-ଦାନ ଗ୍ରହଣ କରିବେନାହିଁ । ପ୍ରତାପଙ୍କ ଉତ୍ତର ଶୁଣି ଆକବରଙ୍କ ଚକ୍ଷୁ ଆନନ୍ଦାଶ୍ରୁରେ ପୂର୍ଣ୍ଣ ହୋଇଗଲା ।

ରାଣା ଉଦୟପୁରରେ ଅବସ୍ଥାନ କରି ରାଜକାର୍ଯ୍ୟ ପରିଚାଳନା କରୁଥିଲେ । ତାଙ୍କ ରହିବା ନିମନ୍ତେ ସାମାନ୍ୟ କେତୋଟି କୁଟୀର ନିର୍ମିତ ହୋଇଥିଲା । ସେ ଏହି କୁଟୀରରେ ରହି ଅତି ହୀନଭାବରେ କାଳଯାପନ କରୁଥିଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଭୋଗର ସୀମା ମଧ୍ୟ ସ୍ପର୍ଶ କରିନାହାନ୍ତି ।

କ୍ରମେ ବାର୍ଦ୍ଧକ୍ୟ ଓ ଚିନ୍ତାଜନିତ ଅବସାଦରେ ତାଙ୍କ ଶରୀର ଅବଶ ହେବାକୁ ଲାଗିଲା । ଯୌବନର ସ୍ଫୂର୍ତ୍ତି ଓ ତେଜ କେଉଁଆଡ଼େ ଉଭେଇଗଲା । ମୃତ୍ୟୁର କରାଳ ଛାୟା ଆସି ତାଙ୍କୁ ଗ୍ରାସ କରିବାକୁ ଉପକ୍ରମ କଲା । ରାଣାଙ୍କର ଏହି ଅବସ୍ଥା ଦେଖି ସର୍ଦ୍ଦାରମାନେ ହାହାକାର କରିବାକୁ ଲାଗିଲେ ।

ଦିନେ ସନ୍ଧ୍ୟାସମୟରେ ମହାବୀର ପ୍ରତାପସିଂହ ସରୋବର-ତୀରବର୍ତ୍ତୀ କୁଟୀର-ପ୍ରାଙ୍ଗଣରେ ତୃଣଶଯ୍ୟାରେ ଶାୟିତ ରହି ପ୍ରକୃତିର ସାୟନ୍ତନୀ ଲୀଳା ଦେଖୁଥିଲେ । ସର୍ଦ୍ଦାରଗଣ ରାଣାଙ୍କ ଚତୁଃପାର୍ଶ୍ୱରେ ବିଷଣ୍ଣମନରେ ଉପବିଷ୍ଟ ଥିଲେ । ଅସ୍ତଗାମୀ ସୂର୍ଯ୍ୟର କନକକିରଣ ବୃକ୍ଷପତ୍ର ଓ ସରୋବର-ବକ୍ଷରେ ନିପତିତ ହୋଇ ଅପୂର୍ବ ଶୋଭାର ସୃଷ୍ଟି କରୁଥିଲା । ମନ୍ଦବାତ-ବିକମ୍ପିତ ସରୋବର-ବକ୍ଷ ଅସଂଖ୍ୟ ଲହରୀ-ମାଳାରେ ବିଭୂଷିତ ହୋଇ ଜନନେତ୍ର ହରଣ କରୁଥିଲା । କନକରଶ୍ମି-ରଞ୍ଜିତ ଲହରୀଗୁଡ଼ିକର ଶୋଭା ଅତୁଳନୀୟ । କିନ୍ତୁ ରାଣାଙ୍କ ନେତ୍ର ବର୍ତ୍ତମାନ ଏହି ଶୋଭା-ରାଜ୍ୟର ଅତିଥି ନୁହେ । ସେ ଭାବୁଥିଲେ, ଚିତୋଡ଼ାଧିକାରର ଅନିଶ୍ଚିତତା ଓ ନିଜର ସାମର୍ଥ୍ୟହୀନତା ବିଷୟରେ, ପୃଥିବୀର ଅନ୍ୟ କୌଣସି ବିଷୟ ପ୍ରତି ତାହାଙ୍କର ଲକ୍ଷ୍ୟ ନ ଥିଲା ।

ସହସା ମହାରାଣାଙ୍କ ଶୀର୍ଣ୍ଣ କଙ୍କାଳକୁ ତଡ଼ିଦ୍‌ବେଗରେ କମ୍ପିତ କରି ଗୋଟିଏ ପ୍ରଚଣ୍ଡ ଦୀର୍ଘନିଶ୍ୱାସ ତାଙ୍କ ହୃଦୟାଭ୍ୟନ୍ତରରୁ ନିର୍ଗତ ହେଲା । ଏତଦ୍ଦର୍ଶନରେ ସର୍ଦ୍ଦାରଗଣ ଶୋକରେ ଅଧୀର ହୋଇଗଲେ । ସାଲୁମ୍ବ୍ରା-ସର୍ଦ୍ଦାର ପ୍ରତାପଙ୍କୁ ସମ୍ବୋଧନ କରି କାତର-କଣ୍ଠରେ କହିଲେ, "ମହାରାଣା, ଏ ଅନ୍ତିମ ସମୟରେ ଆପଣଙ୍କ ଆତ୍ମାକୁ ଏପରି ବ୍ୟଥିତ କରନ୍ତୁନାହିଁ । ବର୍ତ୍ତମାନ ହରିନାମ-କୀର୍ତ୍ତନହିଁ ଏକମାତ୍ର କର୍ତ୍ତବ୍ୟ ।" କିଛିକ୍ଷଣ ନୀରବରେ ରହି ପ୍ରତାପସିଂହ ଧୀରେ ଅଥଚ ସ୍ଖଳିତ ସ୍ୱରରେ କହିଲେ, "ସର୍ଦ୍ଦାରଚୂଡ଼ାମଣି, ମୁଁ ମୋର ଈଶ୍ୱରଙ୍କ ବିଷୟରେହିଁ ଭାବୁଛି । ଜଗତ୍ ଯେଉଁ ଅଦୃଶ୍ୟ ମହାଶକ୍ତିକୁ ଈଶ୍ୱରରୂପେ ଅର୍ଚ୍ଚନା କରୁଅଛି, ମୁଁ ତାଙ୍କୁ କେବେ ଦେଖିନାହିଁ—ଦେଖିବା ନିମନ୍ତେ ପ୍ରୟାସ ମଧ୍ୟ କରିନାହିଁ । ମୁଁ ଦେଖିଅଛି ସ୍ମିତହାସମୟୀ ମେବାଡ଼-ଭୂମିର କମନୀୟ ମୂର୍ତ୍ତି । ମୋର ଜନ୍ମଭୂମି ହିଁ ମୋର ଏକମାତ୍ର ଦେବତା । ଏହି ପ୍ରତ୍ୟକ୍ଷ ଦେବତାଙ୍କ ଅନୁରାଗରେ ଯେଉଁ ଅବଶକ୍ତି ବିଦ୍ୟମାନ, ତାଙ୍କୁ ମୁଁ ଦେଖିବି କିପରି ? ମୁଁ ଯେ ଜନ୍ମଭୂମିର

ପ୍ରକୃତ ସେବା କରିପାରିଲି ନାହିଁ—ଚିତୋଡ଼ର ପୁନରୁଦ୍ଧାର ଅଦ୍ୟ-ପର୍ଯ୍ୟନ୍ତ ଅପୂର୍ଣ୍ଣ ରହିଲା । ଅମରସିଂହ ତରୁଣ ସୁଖଲାଳସ—ଜନ୍ମଭୂମିକୁ ଯବନକବଳରୁ ରକ୍ଷା କରିବା ତା' ପକ୍ଷରେ ଏକାବେଳକେ ଅସମ୍ଭବ । ଏହି ଯେ ସାନ କୁଟୀରଗୁଡ଼ିକ ଦେଖୁଅଛନ୍ତି, ମୋର ମୃତ୍ୟୁପରେ ଏଠାରେ ସୁଶୋଭିତ ହର୍ମ୍ୟସମୂହ ନିର୍ମିତ ହେବ । ଆପଣମାନେ ସମସ୍ତେ ବିଳାସରେ ମତ୍ତ ହେବେ । ମେବାଡ଼ଭୂମି ଚିରକାଳ ଯବନର କ୍ରୀତଦାସୀ ହୋଇ ରହିବ ।" ପ୍ରତାପସିଂହ ଆଉ କହିପାରିଲେ ନାହିଁ । ତାଙ୍କ କଣ୍ଠ ବାଷ୍ପରୁଦ୍ଧ ହୋଇଗଲା ।

ସର୍ଦ୍ଦାରମାନେ ସମସ୍ୱରରେ ଉତ୍ତର କଲେ, "ମହାରାଣା, ଆମ୍ଭେମାନେ ଈଶ୍ୱରଙ୍କ ପବିତ୍ର ନାମରେ ଶପଥ କରି କହୁଅଛୁଁ, ଆମ୍ଭମାନଙ୍କ ପିଣ୍ଡରେ ପ୍ରାଣ ଥିବାପର୍ଯ୍ୟନ୍ତ ମେବାଡ଼ଭୂମି କଦାପି ଯବନର କ୍ରୀତଦାସୀ ହେବନାହିଁ । ଆମ୍ଭେମାନେ ପୁନର୍ବାର ଶପଥ କରି କହୁଅଛୁଁ ଯେ, ଏହି କୁଟୀରଗୁଡ଼ିକହିଁ ଆମ୍ଭମାନଙ୍କର ଆବାସଭୂମି ହୋଇରହିବ, କୁମାର ଅମରସିଂହ ବିଳାସର ସୀମା ସୁଦ୍ଧା ସ୍ପର୍ଶ କରିପାରିବେ ନାହିଁ ।"

ସର୍ଦ୍ଦାରମାନଙ୍କ ପ୍ରତିଜ୍ଞା-ବାକ୍ୟ ଶୁଣି ପ୍ରତାପସିଂହଙ୍କ ଶୁଷ୍କ ଅଧରରେ କ୍ଷୀଣ ହାସ୍ୟରେଖା ପ୍ରକଟିତ ହେଲା, ଚକ୍ଷୁ ଉଜ୍ଜ୍ୱଳ ଆଲୋକରେ ଦୀପ୍ତ ହେଲା । ମହାରାଣା ଏକାଗ୍ରଚିତ୍ତରେ ଚିତୋଡ଼ ଆଡ଼େ ଦୃଷ୍ଟିନିକ୍ଷେପ କରି ରହିଲେ । ତାହାଙ୍କର ସେ ଦୃଷ୍ଟି ଆଉ ଚିତୋଡ଼ରୁ ପ୍ରତ୍ୟାବୃତ୍ତ ହେଲା-ନାହିଁ । ଚିତୋଡ଼-ନାମ-ଉଚ୍ଚାରଣପୂର୍ବକ ପ୍ରତାପସିଂହ ଭବ-ରଙ୍ଗଭୂମିରୁ ଚିରବିଦାୟ ଗ୍ରହଣ କଲେ । ସ୍ୱାଧୀନତା-ଗଗନର ଉଜ୍ଜ୍ୱଳତମ ନକ୍ଷତ୍ର ଚିରକାଳ ନିମନ୍ତେ ଅସ୍ତମିତ ହେଲା ।

# ଉପସଂହାର

ପ୍ରତାପଙ୍କ ମୃତ୍ୟୁପରେ ଅକବର ଅନେକ ଦିନ ଜୀବିତ ଥିଲେ ସୁଦ୍ଧା ମେବାଡ଼ାଧିପତିଙ୍କୁ ହୃଦୟରେ ସ୍ଥାନ ଦେଇନଥିଲେ । ପାରିବାରିକ ଅଶାନ୍ତିଯୋଗେ ତାଙ୍କ ଶେଷ ଜୀବନ ଅଶାନ୍ତିମୟ ହୋଇଥିଲା ।

ମାନସିଂହ ଭାବିଥିଲେ ଯେ, ଅକବରଙ୍କ ମୃତ୍ୟୁପରେ କୁମାର ଖସ୍ରୁ ଦିଲ୍ଲୀର ସିଂହାସନରେ ଅଧିରୂଢ଼ ହେବେ । ଅକବର ନିଜେ ତାଙ୍କ ମନରେ ସେପରି ବିଶ୍ୱାସର ଉଦ୍ରେକ କରିଥିଲେ ମଧ୍ୟ, କିନ୍ତୁ ମାନସିଂହଙ୍କ ଏ ଭ୍ରାନ୍ତ ବିଶ୍ୱାସ ବେଶିଦିନ ରହିପାରିନଥିଲା । ମୃତ୍ୟୁର କେତେଦିନ ପୂର୍ବେ ଅକବର ସେଲିମଙ୍କୁହିଁ ଉତ୍ତରାଧିକାରୀରୂପେ ଘୋଷିତ କଲେ । ମାନସିଂହଙ୍କ ଜୀବନ-ବ୍ୟାପୀ ପରିଶ୍ରମ ବ୍ୟର୍ଥ ହେଲା । ଅକବରଙ୍କ ସାହଚର୍ଯ୍ୟରେ ରହି ସେ ନିଜେ ହିନ୍ଦୁସାମ୍ରାଜ୍ୟ ସ୍ଥାପନ କରିପାରିଲେନାହିଁ କିମ୍ବା ପ୍ରତାପଙ୍କୁ ସେପରି କରିବାକୁ ଅବସର ଦେଲେ ନାହିଁ । ଜୀବନପ୍ରତି ତାଙ୍କ ମନରେ ଅଶେଷ ଧିକ୍କାର ଜାତ ହେଲା । ଅନୁଶୋଚନାର ବୃଶ୍ଚିକ-ଦଂଶନରେ ସେ ଅଧୀର ହୋଇଗଲେ ।

ମାନସିଂହ ଜୀବିତ ଥିଲେ କାଳେ ବିପଦ ଘଟାଇପାରନ୍ତି ଭାବି ଅକବର ଦିନେ ତାଙ୍କୁ ଭୋଜନାର୍ଥେ ସ୍ୱଗୃହକୁ ନିମନ୍ତ୍ରିତ କଲେ । ମାନ-ସିଂହଙ୍କ ଅନ୍ନରେ ବିଷ ସନ୍ନିବେଶିତ କରି ତାଙ୍କୁ ଗୋପନରେ ମାରିବାକୁ ସମ୍ରାଟ୍ ସର୍ବବିଧ ଆୟୋଜନ କରିଥିଲେ; କିନ୍ତୁ ଦୁର୍ଦୈବବଶତଃ ଅମ୍ବରାଧିପତିଙ୍କ ନିମନ୍ତେ ଉଦ୍ଦିଷ୍ଟ ଅନ୍ନ ତାଙ୍କ ନିଜ ଭାଗରେ ପଡ଼ିବାରୁ ଦିଲ୍ଲୀଶ୍ୱର ନିଜେ ପଞ୍ଚତ୍ୱପ୍ରାପ୍ତ ହେଲେ । ଏପରି ଜଘନ୍ୟଭାବରେ ଅକବରଙ୍କ କଳଙ୍କ-ମୟ ଜୀବନର ଅବସାନ ହୋଇଥିଲା ।

Printed by D. Rath, The Store Press, Berhampore.